# ଭୋଟ କଥାଟା କ'ଣ ?

ବିନୋଦ କାନୁନ୍‌ଗୋ

ପ୍ରକାଶକ—
ବିନୋଦ କାନୁନ୍‌ଗୋ
କଟକ—୨
୧୯୫୭

ମୂଲ୍ୟ—ଛ'ଅଣା

# ଏ ବହି କାହିଁକି ?

ଦୁନିଆରେ ଦୁଇ ପ୍ରକାର ଶାସନ ଚାଲିଛି—"ସମସ୍ତଙ୍କ ମତରେ ଶାସନ" ଓ "ଜଣକ ମତରେ ଶାସନ" । ସମସ୍ତଙ୍କ ମତ ନେଇ ଯେଉଁଠି ଦେଶର କାମ ଚାଲିଛି ସେଠି ଗଣତନ୍ତ୍ର ଜାରି ରହିଛି ବୋଲି କୁହାଯାଏ ।

ଗଣତନ୍ତ୍ର ନୀତିରେ ଦେଶକୁ ଚଳାଇବାକୁ ହେଲେ କେତେ-ଲୋକଙ୍କୁ ବାଛି ଦେବାକୁ ହେବ । ସେହିମାନେ ଶାସନ କାମ ଚଳାଇବେ । ସେହି ବାଛି ଦେବା କାମଟାକୁ ନିର୍ବାଚନ ବୋଲି କୁହାଯାଏ । ଲୋକଙ୍କର ମତ ନେଲେ ତ ନିର୍ବାଚନ ହେବ—ସେହି 'ମତ'ର ଅନ୍ୟନାମ ହେଲା 'ଭୋଟ' ।

ଭୋଟ କଥାଟିର ପ୍ରକୃତ ଅର୍ଥ କ'ଣ ବୁଝି ସୁଝି ଭୋଟ ଦେଲେ କଣ ହୁଏ ଓ ଅନ୍ଧଭାବରେ ଦେଲେ କଣ ହୁଏ ଜାଣିଲା ପରେ କିଏ କାହାକୁ ଭୋଟ ଦେବ ସ୍ଥିର କରିବା ସହଜ । ଲୋକେ ଏ ବହିଟି ପଢିଲେ ଭୋଟ ବିଷୟରେ ଯାବତୀୟ କଥା ନିଶ୍ଚେ ଜାଣି

ଯିବେ । ଆମେ ବୁଝିପାରିବା ଯେ ଭୋଟ କାଗଜଟି ଗୋଟିଏ "କ୍ଷମତା-ପତ୍ର ଦଲିଲ ।" ସେ ଦଲିଲ ଆମେ ଯାହା ନାଁରେ ସଂପାଦନ କରି-ଦେବା ସେହି ହେଲା ଆମ କ୍ଷମତାପତ୍ର ପାଇଥିବା ପ୍ରତିନିଧି । କ୍ଷମତାପତ୍ର ସଂପାଦନ କରିଦେବା ପୂର୍ବରୁହିଁ ଭାବିବାକୁ ହେବ କ'ଣ କରିବାକୁ ଯାଉଛୁ । ତା ପରେ ଆଉ ବିଶେଷ କିଛି ଭାବିବାର ନ ଥିବ ।

ଯେଉଁ ଦେଶର ଲୋକେ ଭଲ ଭାବରେ ବୁଝି ଭୋଟ ଦିଅନ୍ତି ସେ ଦେଶର ଉନ୍ନତି ହୁଏ; ନ ବୁଝି ନ ସୁଝି ଦେଲେ ଦେଶ ପଛକୁ ଫେରି ଯାଏ ।

ଆମ ଦେଶରେ ଭୋଟ ଶାସନ ଚାଲୁ ଥିବାରୁ, ସମସ୍ତେ ଏ ବିଷୟରେ ସବୁ କଥା ଭଲ ଭାବରେ ଜାଣନ୍ତୁ ବୋଲି ଆମର ଇଚ୍ଛା । ସେଇଥି ପାଇଁ ଏ ବହି ଖଣ୍ଡିକ ଲେଖା ଯାଇଛି ।

ବିନୋଦ କାନୁନ୍‌ଗୋ
ତା ୧୫।୨।୫୨

# ଛୋଟ କଥାଟା କ'ଣ ?

ହଜାରେ ବର୍ଷ ତଳର ଜଣେ ଲୋକ ଯଦି କେଉଁଠି ଜୀଇଥାନ୍ତା ଓ ଆଜି ହଠାତ୍ ଆସି ଆମ ଆଗରେ ଠିଆ ହୋଇଯାଆନ୍ତା, ଆଜିର ଦୁନିଆକୁ ଦେଖି ସେ କାବା ହୋଇଯାଆନ୍ତା — ତା' ପାଟିରୁ କଥା ବାହାରନ୍ତା ନାହିଁ । ଉଡାଜାହାଜଟା ଆକାଶରେ ଉଡୁଛି ଦେଖିଲେ ତାକୁ ଯେତିକି ଆଶ୍ଚର୍ଯ୍ୟ ଲାଗନ୍ତା, ତାଠୁଁ ବେଶି ଲାଗନ୍ତା ରେଡିଓ ଶୁଣି । ସେ ସହଜରେ ବିଶ୍ୱାସ କରନ୍ତା ନାହିଁ ହଜାର ହଜାର କୋଶ ଦୂରରୁ କଥାଟା ଶୁଭୁଛି ।

କିନ୍ତୁ ତାକୁ ବୋଧହୁଏ ସବୁଠୁଁ ବେଶି ଆଶ୍ଚର୍ଯ୍ୟର କଥା ବୋଲି ଜଣା ପଡନ୍ତା "ଛୋଟ କାଗଜ" ଖଣ୍ଡିକ । ଖଣ୍ଡିଏ ଛୋଟ କାଗଜର କରାମତି କେତେ ଜାଣିଲା ପରେ ସେ ଠକାହୋଇ ବସିପଡନ୍ତା । ମନୁଷ୍ୟର ବୁଦ୍ଧି ଶେଷ ସୀମାରେ ପହଁଚିଲାରୁ ଯାଇ ସେ "ଛୋଟ କାଗଜ" ସୃଷ୍ଟି କରି ପାରିଲା । ପରମାଣୁ ବୋମାର ଶକ୍ତି ସବୁଠୁଁ

ବେଶି ହୋଇ ପାରେ—କିନ୍ତୁ ତାକୁ ନିଜ ଅକ୍ତ୍ୟାର ଭିତରେ ରଖୁଛି ଏହି ଭୋଟ !

ଏକଥା ମାନିଗଲେ କିଛି କ୍ଷତି ନାହିଁ ଯେ ଭୋଟ କାଗଜର ଇତିହାସହିଁ — ମଣିଷ ସଭ୍ୟତାର ଇତିହାସ । ଗୋଟାଏ ଗୋଟାଏ ଦେଶର କୋଟି କୋଟି ଲୋକ ଏହି ଭୋଟ କାଗଜରେ ବନ୍ଧାହୋଇ ଏକ କୁଟୁମ୍ବ ଭଳି ଚଳୁଛନ୍ତି ।

କିନ୍ତୁ ତା ସଙ୍ଗେ ସଙ୍ଗେ ଆଉ ଗୋଟିଏ କଥା ଭୁଲିଗଲେ ଚଳିବ ନାହିଁ । ଭୋଟ କାଗଜ ଖଣ୍ଡିକର ଶକ୍ତି ଏତେ ବେଶି ହୋଇଥିବାରୁ ତାକୁ ବ୍ୟବହାର କରି ଜାଣିଲେ ଆମେ ପୃଥିବୀଟାକୁ ସ୍ୱର୍ଗ କରି ଦେଇ ପାରିବା—ବ୍ୟବହାର କରିନଜାଣିଲେ ନର୍କ ପାଲଟିଯିବ । ବ୍ୟବହାର ଗୁଣେ ଏକାନିଅଁ ନୂଆ ସଂସାର ଗଢ଼ିଦେଉଛି ତ ଶହ ଶହ ବର୍ଷର ପରିଶ୍ରମକୁ ପୋଡିଜାଳି ମାଟିରେ ମିଶାଇ ଦେଉଛି । ଆମେ ଯେତେବେଳେ ଭୋଟ ଯୁଗରେ ଜନମ ହୋଇଛୁ ଭୋଟ ଶବ୍ଦର ପ୍ରକୃତ ଅର୍ଥ କଣ, ତା'ର ବ୍ୟବହାର କିପରି ହୁଏ, ବ୍ୟବହାର କରି ଜାଣିଲେ କିଭଳି ଲାଭ ହୁଏ ଓ ନଜାଣିଲେ କିପରି ସର୍ବନାଶ ହୁଏ — ଏହି ସବୁକଥା ଆମକୁ ଜାଣିବାକୁହିଁ ପଡ଼ିବ ।

## ପ୍ରଥମ ମଣିଷ

ଯେତେବେଳେ ପ୍ରଥମେ ମଣିଷ ଜନ୍ମହେଲା ସେତେବେଳେ ପୃଥିବୀରେ କମ୍ ଲୋକଥିଲେ । ଖୁବ୍ ବେଶି ହେଲେ ଗୋଟିଏ ଗୋଟିଏ ସ୍ଥାନରେ ପାଞ୍ଚ ଦଶ ଜଣ ଏକାଠି ରହୁଥିଲେ । ସେତେବେଳେ କାହାରିତ ଘର ଦ୍ୱାର ନ ଥିଲା । ପାହାଡ଼ ଖୋଲ ବା ଗଛମୂଳ ଥିଲା ଆଶ୍ରୟ ସ୍ଥଳ । ଗୃହ ବାସ କେହି ଜାଣି ନ ଥିଲେ । ଜୀବ-ଜନ୍ତୁଙ୍କ ମାଂସ ଓ ଫଳମୂଳ ଖାଇ ଚଳି ଯାଉଥିଲେ । ଲୋକ

କମ୍—ଖାଇବା ପଦାର୍ଥର ଅଭାବ ନାହିଁ—କଳିଗୋଳ ବା କାହାଁକୁ ଲାଗନ୍ତା । ସମାଜ ବୋଲି ଗୋଟାଏ କିଛି କଥା ସେ ଯୁଗର ମଣିଷ ଜାଣି ନ ଥିଲା । ତଥାପି ସେହି ଆଠ ଦଶ ଜଣ ବା ପନ୍ଦର କୋଡ଼ିଏ ଜଣ ନିଜ ଭିତରୁ ଜଣକୁ କାହାକୁ ମୁରବି ଭଳି ମାନି ଚଳି ଯାଉଥିବେ, ବିଶେଷ କିଛି ଅସୁବିଧା ହେଉ ନ ଥିବ ।

## ଗୃହ ଶିଖିଲା

ମଣିଷର ଟିକିଏ ବେଶି ବେଶି ବୁଦ୍ଧି ହେଲା । କ୍ରମେ ଲୋକ ସଂଖ୍ୟା ବଢ଼ିଲାରୁ ହାତ ପାଆନ୍ତାରେ ଯଥେଷ୍ଟ ଫଳମୂଳ ମିଳିଲା ନାହିଁ—ଶୀକାରରେ ସବୁବେଳେ ଯୁଟେ ନାହିଁ । ଗଛ କିପରି ଉଠୁଛି, ବଡ଼ ହେଉଛି, ଫୁଲ ଧରୁଛି, ଫଳ ଫଳୁଛି—ସବୁ କଥା ଲକ୍ଷ୍ୟ କଲାରୁ ଗୃହର ସୁବିଧା ମନୁଷ୍ୟ ପାଇ ଗଲା । ମନୁଷ୍ୟର ଆନନ୍ଦର ସୀମା ରହି ନ ଥିବ । କେତେ ଅଳ୍ପ ଜାଗାରୁ ସେ ତା'ର ଖାଇବା ଜିନିଷ ପାଇ ଯାଉଛି ଦେଖି ଟିକିଏ ଆଶ୍ଚର୍ଯ୍ୟ ମଧ୍ୟ ହୋଇ-ଥିବ । ସେତେବେଳକୁ ଲୁଗା ପିନ୍ଧି ଶିଖି ନଥିଲେ ମଧ୍ୟ ଗୃହ କଅଣ ଗୃହଯତ୍ନେ ଡାଳ ପତ୍ରରେ କୁଡ଼ିଆ ମାନ ରହୁଥିବ । ଯେଉଁଠି ଗୃହର ସୁବିଧା ଅଛି—ବିଶେଷତଃ ନଈ କୂଳରେ ଦଳେ ଦଳେ ଲୋକ ଏକାଠି ରହି ଯାଇଥିବେ । ପ୍ରଥମ ଗାଁ ସବୁ ଏହିଭଳି ଭାବରେ ସୃଷ୍ଟି ହୋଇଥିବ ।

## ଗାଁ ଓ ଦଳପତି

ଗାଁଟିରେ ଅନେକ ଲୋକ ରହିଲେ ଓ ହୁଏତ ଭିନେ ଭିନେ ଗୃହ କଲେ । ସ୍ଥାୟୀ ଭାବରେ ବସବାସ କରି ରହିବା ଫଳରେ ନାନା ସମସ୍ୟା ଦେଖା ଦେଉଥିବ—ବିଲରେ ବାଡ଼ରେ କଳି ହୋଇଥିବ । କଳିଗୋଳ ତୁଟାଇବା ଦରକାର । ସେ କାମ

କରନ୍ତା କିଏ ? ଗାଁ ଯାକ ଲୋକେ ମିଶି ଜଣେ ଲୋକ ବାଛୁଲେ । ଦଳକଯାକ ଲୋକ ଏକାଠି ବସି ଯାହାକୁ ମୁରବି ବୋଲି ଠିକ୍ କରିଦେଲେ ସେହି ହେଲା ଦଳର ମାଲିକ । ତାକୁ କହିଲେ 'ଦଳପତି' । ସେହି ଜଣକ ସମସ୍ତଙ୍କ ହାନି ଲାଭ ବୁଝିଲା । ସେତେବେଳେ ତା'ର ଏକମାତ୍ର କାମ ଥିଲା କଳିଗୋଳ ହେଲେ ନିଷ୍ପତ୍ତି କରି ଦେବା ଓ ଯଦି କେହି କଥା ନ ମାନିଲା ବା ବଦମାସି କଲା ତାକୁ ଶାସ୍ତି ଦେବା । ଅପରାଧୀକୁ ଶାସ୍ତି ଦେବା ଓ ଗାଁକୁ ଶତ୍ରୁ ହାତରୁ ରକ୍ଷା କରିବା କାମ ତୁଲାଇବାକୁ ପଡୁ'ଥିବାରୁ ଯୋ ସମସ୍ତଙ୍କଠୁଁ ଦେହ ବଳୁଆ ତାକୁହିଁ ଦଳପତି ରୂପରେ ବଛା ଯାଉଥିଲା । ସମସ୍ତଙ୍କର ଉପରେ ଥିଲା ସେହି ଲୋକଟି ସର୍ଦ୍ଦାର ।

## ରାଜ୍ୟ ଓ ରାଜା

କ୍ରମେ ଅନେକ ଗୁଡ଼ିଏ ବସ୍ତି ଗଢ଼ି ଉଠିଲା । ପ୍ରତି ବସ୍ତିର ଜଣେ ଜଣେ ଦଳପତି ରହିଲେ । ଭିନ୍ନ ଭିନ୍ନ ଗାଁ ଭିତରେ କଳି-ଗୋଳ ହେଲେ—ବିବାଦ ଲାଗିଲେ ତୁଟାଇ ଦେବାକୁ କେହି ନ ଥିଲେ । ଫଳରେ ଅନେକ ସମୟରେ ଅଶାନ୍ତ ହେଉଥିବ । ଅନେକ ଗାଁକୁ ମିଶାଇ ଗୋଟିଏ ଗୋଟିଏ ରାଜ୍ୟର ସୃଷ୍ଟି ହେଲା । ଆଜିକାଲି ଯେମିତି ଚୀନ, ଭାରତ, ରୁଷ, ଆମେରିକାଭଳି ଅତି ବଡ଼ବଡ଼ ରାଜ୍ୟଟାମାନ ଅଛି ସେତେବେଳେ ସେଭଳି କେବେହେଲେ ନଥିବ । ଅଳ୍ପ କେତେକ ଅଞ୍ଚଳକୁ ନେଇ ଛୋଟ ଛୋଟ ରାଜ୍ୟଟିମାନ ମୁଣ୍ଡଟେକି ଉଠିଥିବେ । ସେହି ରାଜ୍ୟର ଲୋକେ କାହାକୁ ଜଣେ ମୁରବି ବୋଲି ବାଛୁ ଥିବେ ଓ ତା'ର ନାମ ଦିଆଯାଇଛି ରାଜା ।

ସେ ସମୟରେ କେହି ନିଜ ଇଚ୍ଛାରେ ରଜାହୋଇ ଯାଉ ନଥିଲା । ସମସ୍ତେ ମତ ଦେଇ ଯାହାକୁ ବାଛୁଥିଲେ ସେହି ହେଉଥିଲା ରାଜା ।

ମଧ ନିଜ ଦାୟିତ୍ୱ ତୁଲାଇ ପାରୁନଥିଲା ତାକୁ ବଦଳାଇ ଅନ୍ୟ ଜଣଙ୍କୁ ରାଜା କରାଯାଉଥିଲା । ରାଜାର ପୁଅ ରାଜାହେବ ବୋଲି ସେ କାଳର ଲୋକେ କେବେ ହେଲେ ବାଧ୍ୟ ନଥିଲେ । ସେତେବେଳର ରାଜାର ରାଜଗୀ ଲୋକଙ୍କ ମର୍ଜି ଉପରେ ନିର୍ଭର କରୁଥିଲା । ତେଣୁ ସେ ତାହାର କର୍ତ୍ତବ୍ୟ ଠିକ୍ ଭାବରେ ପାଳୁଥିଲା । ମନଇଚ୍ଛା ଶାସନ କରୁ ନଥିଲା ।

## ଲୋକେ ହେଳା କଲେ

ଲୋକେ ଯାହାକୁ ବାଛୁଥିଲେ ସେ'ତ ରାଜା ହେଉ ଥିଲା, କିନ୍ତୁ ପଛ ବେଳକୁ "ଲୋକେ ବାଛିବା କାମଟା" ଟିକିଏ ହୁଗୁଳା ଧରିଗଲା । ଆଜି କାଲି ମଧ୍ୟ ଅନେକ ଲୋକଙ୍କ ମୁହଁରୁ ଶୁଣାଯାଏ— "ମୋର କ'ଣ ଭୋଟ ଦେବାକୁ ଯାଉଛି—ଏତେ ଲୋକତ ଯାଉଛନ୍ତି ଯାହା କରିବେ ହେବ । ସେତେବେଳେ ସେମିତ ଲୋକେ ହେଳା କଲେ । ଏକା ରାଜା ବହୁ ଦିନ ଧରି ରହିଗଲା । ଅନେକ ଦିନ ରହିବାରୁ ତା'ର ଭୟ ଭାଙ୍ଗିଗଲା, ସେ ଆଉ ଲୋକଙ୍କୁ ଡ଼ରିଲା ନାହିଁ । ଦଳେ ଲୋକଙ୍କୁ ହାତରେ ରଖି ଅନ୍ୟମାନଙ୍କୁ ଡରେଇ ଧରେଇ ରଖିଲା । ସେ କିଛି ଭଲ ମନ୍ଦ କଲେ ଦଳ ବାନ୍ଧି କେହି ତାର ପ୍ରତିବାଦ କରି ପାରିଲେ ନାହିଁ । ସବୁ ରାଜା ଯେ ଏପରି କଲେ ଏ କଥା କେହି କହୁ ନାହିଁ । କେତେକ ରାଜା ଭଲ ଶାସନ ଚଳାଇଲେ, ଅନ୍ୟମାନେ ହେଲେ ଅତ୍ୟାଚାରୀ ।

ଏହିଭଳି ଭାବରେ ଅନେକ ଦିନ ଧରି ଶାସନ ଚାଲିଲା । କିଛି-କାଳ ପରେ ଦେଖାଗଲା ଯେ ରାଜାର ପୁଅ ରାଜାହୋଇ ଗଲା । ତାର କିଛି ଯୋଗ୍ୟତା ଥାଉ ବା ନ ଥାଉ ତାକୁ ଲୋକେ ରାଜା ବୋଲି ମାନିଲେ । ଅଯୋଗ୍ୟ ରାଜା ତା' ଚାରିପଟେ ଥିବା କେତେକ

ଦୁଷ୍ଟ ଓ ଅତ୍ୟାଚାରୀ ଲୋକଙ୍କ ସାହାଯ୍ୟ ଓ ପରାମର୍ଶରେ ଶାସନ ଚଳାଇଲେ । ସେତେବେଳେ ଲୋକଙ୍କ ଦୁର୍ଦ୍ଦଶାର ସୀମା ରହିଲା ନାହିଁ । ଯଦି କେହି ପ୍ରତିବାଦ କରିବାକୁ ବାହାରିଲେ ତାକୁ କୁହାଗଲା 'ବିଦ୍ରୋହୀ' । ଦେଶର ରାଜା ବିରୁଦ୍ଧରେ ଯାଇ ଥିବାରୁ ତାହାର ମୁଣ୍ଡ କାଟ ହେଲା । ଶେଷକୁ ଏଭଳି ଅବସ୍ଥା ହେଲା ଯେ ଲୋକେ ରାଜାଙ୍କୁ ଦେବତା ବୋଲି ମନେ କଲେ । ରାଜାଙ୍କ ବିରୁଦ୍ଧରେ ଯଦି କେହି କିଛି କହିଲା ଲୋକେ ମଧ୍ୟ ତାକୁ ପାପୀ ବୋଲି ବିଚାରିଲେ । ରାଜା ହେଲା "ଚଳନ୍ତି ବିଷ୍ଣୁ" । ମୋଟ ଉପରେ ରାଜା ହେଲା ଜନ୍ମରୁ ରାଜା—ଲୋକେ ତାକୁ ବାଛିବା କଥାଟା ସମସ୍ତଙ୍କ ମନରୁ ପୋଛି ହୋଇଗଲା । ରାଜପଦ ସହିତ ଲୋକଙ୍କର କିଛି ସମ୍ବନ୍ଧ ରହିଲା ନାହିଁ । ସେଇଟା ହେଲା ରାଜବଂଶର ଘରୋଇ କଥା । ଲୋକ ଗୁଡ଼ାକ ପାଟି ଫିଟାଇବାକୁ କିଏ ?

ଲୋକେ ପାଟି ଫିଟାଇବା ଭୟଟା ମନରୁ ଯେତେବେଳେ ଦୂର ହୋଇଗଲା ସେ ସ୍ୱେଚ୍ଛାଚାରୀ ପାଲଟିଲା । ସେ ଭାବିଲା ତାର ସୈନ୍ୟ ବଳ ଥିବା ପର୍ଯ୍ୟନ୍ତ ତା'ର ରାଜଗାଦୀ ନିରାପଦ, ଏଣୁ ଭୟ ଗୁଲି ଗଲାରୁ ସେ ବିଳାସ ବ୍ୟସନ ଆଡ଼େ ବେଶି ମନ ଦେଲା । ଲୋକଙ୍କୁ ନାନା ଉପାୟରେ ଶୋଷଣ କଲା । ଏହି ଅବସ୍ଥା ଅନେକ କାଳ ପର୍ଯ୍ୟନ୍ତ ରହିଲା ।

ଅବସ୍ଥା ଯେତେବେଳେ ଅସହ୍ୟ ହେଲା କେତେକ ଦେଶର ଲୋକେ ବିପ୍ଳବ କଲେ । ଲୋକଙ୍କୁ ଚଳାଇବା ପାଇଁ ସାହସୀ ବୀର ବାହାରି ପଡ଼ିଲେ । ପୃଥିବୀର ଅନେକ ଅଞ୍ଚଳରେ ଲୋକେ ନିଜ ବାହୁ ବଳରେ ରାଜାଙ୍କୁ ଗାଦିରୁ ଓଟାଇ ନୂଆ ରାଜା ବସାଇଲେ । ବିଲାତ ପରି ରାଜଭକ୍ତ ଦେଶରେ ମଧ୍ୟ ଜଣେ ରାଜାଙ୍କର ମୁଣ୍ଡ କାଟ ହୋଇ ଗଲା । ଫରାସୀ ଦେଶରେ ବିପ୍ଳବ ହେଲା ।

## ଲୋକେ ନୂଆ କଥା ଭାବିଲେ

ଜଣେ ରାଜାକୁ ତଡ଼ି ଅନ୍ୟ ଜଣକୁ ବସାଇ ଦେଲେ ଲୋକଙ୍କର ରାଗ ଥଣ୍ଡା ପଡ଼ିଗଲା ସିନା, ଅଶାନ୍ତିର ମୂଳ କାରଣ ଦୂରହେଲା ନାହିଁ । ଆଜି ଯେ ଭଲ ବୋଲି ଜଣା ପଡ଼ୁଥିଲା କାଲିକି ଦେଖିଲା ବେଳକୁ ସେ ଅତ୍ୟାଚାରୀ ପାଲଟିଲାଣି । ତା'ହେଲେ ଏତେ ପରିଶ୍ରମ କରି, ଏତେ କଷ୍ଟ ସହି, ଏତେ ତ୍ୟାଗ କରି ନୂଆ ରାଜା ବାଛିଲେ ଲାଭ କଣ ? ଖୁବ ସ୍ପଷ୍ଟ ଭାବରେ ନ ହେଲେ ମଧ୍ୟ ଲୋକଙ୍କ ମୁଣ୍ଡରେ ଗୋଟାଏ କଥା ପଶିଲା । ଯେତେ ଦିନ ପର୍ଯ୍ୟନ୍ତ ଜଣକ ହାତରେ କ୍ଷମତା ରହିବ ସେ ଏହି ଭଳି ଗଣ୍ଡଗୋଳ କରୁ ଥିବ—ଏହି କଥାଟି ଅନେକ ବହୁତେ ବୁଝି ଗଲାରୁ ଲୋକେ କୁହା କୁହି ହେଲେ—"ଆଜି କାହାକୁ ରାଜାବୋଲି ବାଛିବା ନାହିଁ । ଯେତେ ଭଲ ଲୋକ ହେଉ ପଛକେ ସବୁ କ୍ଷମତା ଜଣକ ହାତରେ ରହିଲେ ଦିନେ ନା ଦିନେ ବିପଦ ଆସିବ । ଲଗାମ ନଥିବା ଘୋଡ଼ା ଉପରେ ଚଢ଼ିବ ନାହିଁ କି ଅଙ୍କୁଶ ନଥିବା ରାଜା ଅଧୀନରେ ରହିବ ନାହିଁ । କିନ୍ତୁ ରାଜାକୁ ତଡ଼ି ଦେଲା ପରେ ରାଜ୍ୟ ଶାସନ କରିବ କିଏ ? ସମସ୍ତେ ସ୍ୱାଧୀନ ହୋଇଗଲେ ତ ଦେଶଟା ବିଭ୍ରାଟ ହୋଇଯିବ । ରାଜା ଯେଉଁ କାମ କରୁଥିଲେ ସେ କାମଟା ଚଳିବ କେମିତି—ଏଇ ହେଲା ଚିନ୍ତାର ବିଷୟ ।

## ଗଣତନ୍ତ୍ର ଅର୍ଥ ସମସ୍ତଙ୍କ ଶାସନ

ଉପରେ ଯେତେ ଯେତେ ପରିବର୍ତ୍ତନର କଥା କୁହାଗଲା ସେ ଗୁଡ଼ିକ ଅଳ୍ପ କେତେଟା ବର୍ଷ ଭିତରେ ହୋଇଗଲା ବୋଲି ବିଚାରିଲେ ଭୁଲ ହେବ । କୌଣସି ରାଜା ନରହି କିଭଳି ରାଜ୍ୟ ଶାସନ ହେବ—ଏହି ଚିନ୍ତା ମଣିଷ ମନକୁ ଆସିବା ପାଇଁ ବହୁ-ଶହ ବର୍ଷ ନିଶ୍ଚୟ ଲାଗି ଥିବ ।

ମଣିଷ ଜାତିର ସୌଭାଗ୍ୟକୁ କେତେକ ଚିନ୍ତାଶୀଳ ଲୋକ ଭାବଚିନ୍ତି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚି ଗଲେ । ସେମାନେ ଏହି କଥା କହିଲେ—ଜଣେ କାହିଁକି ରାଜା ହେବ ? ସମସ୍ତେ ହେବେ ରାଜା । ଜଣେ କାହିଁକି ଶାସନ କରିବ ?—ସମସ୍ତେ ଶାସନ କରିବେ । ଜଣକ ହାତରେ କ୍ଷମତା ନ ରହି ସମସ୍ତଙ୍କ ହାତରେ ରହିବ । ଯେଉଁ ଲୋକ ଶାସନ କରୁଛି — ରାଜ୍ୟ ଚଳାଉଛି ସେ କାହିଁକି ଭାବୁଛି ଯେ ନିଜ ବଳରେ ଶକ୍ତିରେ ସେ ବଳୀୟାନ । ସମସ୍ତଙ୍କ ଶକ୍ତି ଓ ବଳ ତା' ପଛରେ ଅଛି ବୋଲି ସେ ରାଜା ହୋଇଛି, ଅଥଚ ଭାବି ନେଉଛି ଯେ ତାହାର ବଳରେ ସେ ବଳୀୟାନ । ନାଁ, ଏଣିକି ସମସ୍ତେ ରାଜ୍ୟ ଚଳାଇବେ—ସମସ୍ତେ ଶାସନ ଚଳାଇବେ ।

ଏହି ଚିନ୍ତା—ଏହି ଭାବନାରୁ "ଡେମୋକ୍ରାଟ୍" ଶବ୍ଦର ସୃଷ୍ଟି ହେଲା ଗ୍ରୀକ୍ ଭାଷାରେ "ଡେମୋ" Demos ଶବ୍ଦର ଅର୍ଥ 'ଲୋକମାନେ' । ଓ 'କ୍ରାଟୋ' Krato ଶବ୍ଦର ଅର୍ଥ ବଳ ବା ଶକ୍ତି । ଲୋକମାନଙ୍କ ବଳରେ ଯେ ବଳୀୟାନ ସେହି ହେଲା "ଡେମୋକ୍ରାଟ୍ ।" 'ଗଣ' ଶବ୍ଦର ଅର୍ଥ ସମସ୍ତେ । 'ଗଣ'ଙ୍କ 'ତନ୍ତ୍ର' ଅର୍ଥାତ୍ "ସମସ୍ତଙ୍କ ଶାସନ"ର ନାମ ହେଲା ଗଣତନ୍ତ୍ର ।

ଯେ ଡେମୋକ୍ରାଟ ବା ଗଣତନ୍ତ୍ର ବାଦୀ ତା'ର ବିଶ୍ୱାସ ଯେ ସମସ୍ତଙ୍କ ବଳରେ ବଳୀୟାନ ହୋଇ ସେ ଶାସନ ଚଳାଇଛି । ସମସ୍ତେ ଯଦି ତାକୁ ଶକ୍ତିଶାଳୀ ବା ବଳଶାଳୀ ନ କରିବେ ସେ ମୁହୂର୍ତ୍ତିକ ପାଇଁ ସୁଦ୍ଧା ଶାସନ ଚଳାଇ ପାରିବ ନାହିଁ । ଶ୍ରୀକୃଷ୍ଣଙ୍କ "ବଳ" ଥିବାରୁ ଅର୍ଜ୍ଜୁନ ଗାଣ୍ଡିବ ଧନୁ ଧରି ଯୁଦ୍ଧ କରୁଥିଲା ଓ ପୃଥିବୀରେ ତ୍ରିଭୁବନ ବିଜୟୀ ବୀର ବୋଲି ନାମ ପାଇଥିଲା ।

ଯେତେବେଳେ ଅର୍ଜୁନଙ୍କଠୁ ଭଗବାନ ଶ୍ରୀକୃଷ୍ଣ କଳା କାଢି ନେଲେ ସେ ଗାଣ୍ଡିବ ଧନୁରେ ଯୁଦ୍ଧ କରିବା ତ ଦୂରର କଥା—ତାକୁ ଟିକେ ଉଠାଇ ମଧ୍ୟ ପାରିଲେ ନାହିଁ । ଯେ ଗଣତନ୍ତ୍ର ବାଦୀ ସେ ମଧ୍ୟ ସେହିଭଳି ବିଶ୍ୱାସ କରେ ଯେ ଲୋକଙ୍କ ବଳରେ ସେ ବଳୀୟାନ— ଲୋକେ ଯଦି ତା ଠୁଁ ବଳ କାଢ଼ି ନେବେ ସେ ଶକ୍ତିହୀନ ହୋଇଯିବ । "ଡ଼ିମୋକ୍ରାଟ୍"ର ଓଲଟା ହେଲା "ଅଟୋକ୍ରାଟ୍" 'ଅଟୋ' ହେଉଛି ଅର୍ଥ "ନିଜେ"। ଯେ ବିଶ୍ୱାସ କରେ ନିଜବଳରେ ସେ ବଳୀୟାନ ତାକୁ କୁହାଗଲା "ଅଟୋକ୍ରାଟ୍" ବା ଏକଛତ୍ରବାଦୀ । ଚିନ୍ତାଶୀଳ ଲୋକେ ସ୍ଥିର କଲେ ଯେ ମଣିଷ ସମାଜରେ ଏକଛତ୍ର ଶାସନ ନ ଚାଲି ଗଣତନ୍ତ୍ର ଶାସନହିଁ ଚାଲିବ । ସମସ୍ତଙ୍କ ମତ ନେଇ ରାଜ୍ୟର ସବୁ କାମ ହେବ ବୋଲି ସ୍ଥିର ହେଲା ।

## ପ୍ରତିନିଧି

ତେଣିକି ପ୍ରଶ୍ନ ଉଠିଲା—ପ୍ରତି କଥାରେ ସମସ୍ତଙ୍କ ମତନେବା ସମ୍ଭବ ହେବ କିପରି—ସୁବିଧା ହେବ କିପରି । ସ୍ଥିର ହେଲା ଯେ ରାଜ୍ୟର ଲୋକେ ଅଳ୍ପ କେତେ ଜଣଙ୍କୁ ବାଛି ଦେବେ । ସେଇମାନେ ହେବେ ଲୋକଙ୍କ ବଦଳିଆ, ଅର୍ଥାତ ଲୋକଙ୍କ ଅନୁପସ୍ଥିତିରେ ସେମାନଙ୍କ ତରଫରୁ କାମ କରିବେ । ସେଇମାନଙ୍କୁ "ପ୍ରତିନିଧି" ବୋଲି କୁହାଯିବ । ପ୍ରତିନିଧିମାନେ ଏକାଠି ବସି ଯାହା ସ୍ଥିର କରିବେ ସେଇଟା ସମସ୍ତଙ୍କର ମତ ବୋଲି ଧରାଯିବ । ଗୋଟିଏ ରାଜ୍ୟରେ ଶହେଲକ୍ଷ ଲୋକ ଅଛନ୍ତି—ପ୍ରତି ଲକ୍ଷେ ଲୋକ ଜଣେ ଜଣେ ପ୍ରତିନିଧି ବାଛିଲେ ଶହେ ଜଣ ପ୍ରତିନିଧି ବସ୍ତୁ ହେବେ । ସେହିମାନେ ଦେଶର ଶାସନ କାମ ଲୋକଙ୍କ ତରଫରୁ ଚଳାଇବେ ।

## ନିର୍ବାଚନ

ଏହି ପ୍ରତିନିଧିମାନଙ୍କୁ କିପରି ବଛା ଯିବ ? ଲୋକଙ୍କର କିଏ **ବଦଳିଆ** ହେବ ତାହା କିଭଳି ସ୍ଥିର କରାଯିବ ? ଲୋକେ ଗୋଟିଏ ସ୍ଥାନରେ ଏକାଠି ହୋଇ ନିଜର ମତ ଜଣାଇବେ—କିଏ ସେମାନଙ୍କର ପ୍ରତିନିଧି ହେବ । ଏହି ମତ ଜଣାଇବା କାମଟାକୁ "ନିର୍ବାଚନ" ବୋଲି କୁହାଗଲା । ନିର୍ବାଚନ ଅର୍ଥ ହେଲା ଅନେକଙ୍କ ଭିତରୁ ଜଣକୁ ଠିକ୍ କରିବା । ଯେଉଁ ଲୋକକୁ ଲୋକେ ମତ ଦେଇ ନିର୍ବାଚନ କରନ୍ତି ତାଙ୍କୁ "ନିର୍ବାଚିତ ପ୍ରତିନିଧି" ବୋଲି କୁହାଗଲା ।

## ଆଇନ ସଭା

ନିର୍ବାଚିତ ପ୍ରତିନିଧିମାନେ ଯେଉଁଠି ବସି ଆଲୋଚନା କରି ଆଇନ ଆଦି କରନ୍ତି ସେ ସ୍ଥାନ ବା ଅନୁଷ୍ଠାନଟିକୁ ଆଇନ-ସଭା ବା ବିଧାନସଭା ବୋଲି କୁହାଗଲା । ଅଜି ଭିନ୍ନ ଭିନ୍ନ ଦେଶରେ ଆଇନସଭାକୁ ପାର୍ଲିମେଣ୍ଟ, ଆସେମ୍ବ୍ଲି, କାଉନ୍‌ସିଲ, କଂଗ୍ରେସ, ଡାଏଟ୍, ଲୋକସଭା, ରାଜ୍ୟ ସଭା ଇତ୍ୟାଦି ବୋଲି କହୁଛନ୍ତି । ବର୍ତ୍ତମାନ ପୃଥିବୀରେ ପ୍ରାୟ ପ୍ରତ୍ୟେକ ସଭ୍ୟ ଦେଶରେ ଗଣତନ୍ତ୍ର ଶାସନ ଚାଲିଛି । ଯେଉଁଠି ବା ନ ଚାଲିଛି ସେଠାକାର ଲୋକେ ମଧ୍ୟ ଗଣତନ୍ତ୍ର ନୀତିରେ ଶାସନ ଚାଲିଛି ବୋଲି ଅନ୍ୟମାନଙ୍କୁ ବୁଝାଇବାକୁ ଚେଷ୍ଟା କରୁଛନ୍ତି । ଲୋକେ କ୍ରମେ ଯେତେ ଅଧିକ ସଭ୍ୟ ହେଉଛନ୍ତି, ଶିକ୍ଷିତ ହେଉଛନ୍ତି ଗଣତନ୍ତ୍ରର ପ୍ରକୃତ ଅର୍ଥ ସେତିକି ବେଶି ବେଶି ଜାଣି ପାରୁଛନ୍ତି । ଗଣତନ୍ତ୍ର ଶାସନ ଓ ଏକଛତ୍ର ଶାସନ ଭିତରେ ପ୍ରଭେଦ କଣ ସେ କଥା ଲୋକେ ଅଧିକରୁ ଅଧିକ ଅନୁଭବ କଲେଣି ।

## ଭୋଟ

ଲୋକଙ୍କ ମତକୁ ଭୋଟ ବୋଲି କୁହାଗଲା । ଭୋଟ ଅର୍ଥ ହେଲା 'ମତ' ବା 'ଇଚ୍ଛା' । ଲାଟିନ୍ ଭାଷାରେ 'ଭୋଟମ୍' ଶବ୍ଦର ଅର୍ଥ "ଇଚ୍ଛା" । ଲୋକେ ଯାହାକୁ ଭୋଟ ଦେବେ ଅର୍ଥାତ ଯାହାକୁ ଇଚ୍ଛା କରିବେ ସେହି ହେବ ସେମାନଙ୍କର ପ୍ରତିନିଧି । ପ୍ରଥମେ ପ୍ରଥମେ ଯେତେବେଳେ ଗଣତନ୍ତ୍ର ଶାସନ ଗ୍ରହଣ କରାଗଲା ସବୁ ବୟସ୍କ ବା ସାବାଳକ ଲୋକଙ୍କ ମତ ପଚରା ଗଲା ନାହିଁ । ଯେଉଁମାନଙ୍କର ବୁଦ୍ଧି ଶୁଦ୍ଧି ଅଛି, ପାଠ ଶାଠ ପଢ଼ିଛନ୍ତି, ସଂପତ୍ତି ବାଡ଼ି ଅଛି—ସେହିମାନଙ୍କ ମତ ଜନସାଧାରଣଙ୍କ ମତ ବୋଲି ଧରି ନିଆଗଲା । ସମସ୍ତଙ୍କୁ ଭୋଟ ଅଧିକାର ନ ମିଳି ଅଳ୍ପ କେତେକଙ୍କୁ ମିଳିବାରୁ ସେହିଟାକୁ 'ସୀମାବଦ୍ଧ' ଭୋଟ ଅଧିକାର ବୋଲି କୁହାଗଲା 'ସୀମାବଦ୍ଧ' ଭୋଟ ଅଧିକାର ସପକ୍ଷରେ ଯୁକ୍ତି କରାଗଲା ଯେ ସମସ୍ତେ କିଛି ଶିକ୍ଷିତ ନୁହନ୍ତି, ସମସ୍ତଙ୍କର ଭଲ ମନ୍ଦ ବିଚାର କରିବାର ଶକ୍ତି ନାହିଁ । ତେଣୁ ସେମାନେ ଯୋଗ୍ୟ ଲୋକ ବାଛିବା ସମ୍ଭବ ନୁହେଁ । ଭୋଟ ଦେବା ଲୋକର ଯଦି ବୁଝିବା ସୁଝିବା ଶକ୍ତି ନ ଥାଏ ସେ ଯୋଗ୍ୟ ଲୋକ ବାଛିବ କିପରି ? ଯୋଗ୍ୟ ଲୋକ ଆଇନ ସଭାକୁ ନ ଗଲେ ଦେଶରେ ଭଲ ଶାସନ ଚାଲିବ ନାହିଁ ।

କିନ୍ତୁ ଅନ୍ୟମାନେ ଯୁକ୍ତି କଲେ ଯେ ଯେଉଁମାନଙ୍କର ଧନ ସଂପତ୍ତି ଅଛି, ପାଠ ପଢ଼ିଛନ୍ତି କେବଳ ସେହିମାନଙ୍କୁ ଭୋଟ ଅଧିକାର ଦେଲେ ଧନୀ ଓ ପାଠୁଆ ଲୋକେହିଁ ଶାସନ ଚଳାଇବେ ; କୋଟି କୋଟି ଗରିବ ନିର୍ଦ୍ଧନ ଲୋକଙ୍କର ଶାସନରେ କୌଣସି ହାତ ରହିବ ନାହିଁ । ସଂପତ୍ତିବାଲା, ଇଂରାଜୀ ପଢ଼ୁଆ ଲୋକେ

ନିଜର ସୁବିଧା ହେଲଭଳି ଆଇନ ତିଆରି କରିବେ—ଗରିବ ଲୋକଙ୍କର ଭଲ ମନ୍ଦ ହୁଏତ ବୁଝିବେ ନାହିଁ । ଯେଉଁମାନେ ପାଠ ପଢ଼ିଛନ୍ତି ବା ସମ୍ପତ୍ତି ଅର୍ଜିଛନ୍ତି କେବଳ ସେହି ମାନେହିଁ ଯେ ଯୋଗ୍ୟ ଲୋକ ବାଛିବେ ଏପରି ବସ୍ତୁଭବାର କାରଣ ନାହିଁ ବୋଲି ଯୁକ୍ତି କରାଗଲା । ପାଠୁଆ ଲୋକେ ଅନେକ ସମୟରେ ଅଯୋଗ୍ୟ ଲୋକଙ୍କୁ ଭୋଟ ଦେଉଛନ୍ତି ବୋଲି ପ୍ରମାଣ କରି ଦେଖାଇ ଦିଆଗଲା । ଅନେକ ଯୁକ୍ତି ତର୍କ, କଳିଗୋଳ, ଲଢେଇ ଭିଡ଼ିଇ ପରେ ଆଜି ପୃଥିବୀର ଅନେକ ଦେଶରେ ସାବାଳକ ଲୋକ ଭୋଟ ଅଧିକାର ପାଇଛନ୍ତି । ଆମ ଦେଶରେ ଏକୋଇଶ ବର୍ଷରୁ ଅଧିକ ବୟସର ପ୍ରତ୍ୟେକ ଲୋକ ଭୋଟ ଦେଇ ପାରୁଛନ୍ତି—ସେ ବଡ଼ଲୋକ ହେଉ ବା ଗରିବ ହେଉ, ମୂର୍ଖ ହେଉ ବା ପାଠୁଆ ହେଉ । କୋଟିପତିର ଗୋଟିଏ ଭୋଟ—ଦାଣ୍ଡର ଭିକାରିର ମଧ୍ୟ ସେହି ଗୋଟିଏ ଭୋଟ । ଏମ୍. ଏ. ପାଶ କରିଥିବା ଲୋକର ଗୋଟିଏ ଭୋଟ—ମୋଟେ ଅକ୍ଷର ଚିହ୍ନି ନଥିବା ଲୋକର ସେହି ଗୋଟିଏ ଭୋଟ ।

ଗଣତନ୍ତ୍ର ଶାସନରେ ଲୋକଙ୍କ ହାତରେ କ୍ଷମତା ରହିଲା । ସେମାନେ ଯାହାକୁ ଭୋଟ ବା ମତ ଦେବେ ସେହି ହେବ ତାଙ୍କର ପ୍ରତିନିଧି ଓ ସେହି ପ୍ରତିନିଧି ସେମାନଙ୍କ ତରଫରୁ ଶାସନ ଚଳାଇବ । ଲୋକେ ଯଦି ଭଲ, ଦକ୍ଷ ଓ ଯୋଗ୍ୟ ପ୍ରତିନିଧି ବାଛିବେ ଶାସନ ଭଲ ଭାବରେ ଚଳିବ, ସେମାନେ ସୁଖ ଶାନ୍ତିରେ ରହିବେ—ଯଦି ଅଯୋଗ୍ୟ ଓ ଖରାପ ପ୍ରତିନିଧି ବାଛିବେ ତେବେ ଶାସନ ଭଲ ଭାବରେ ଚଳି ପାରିବ ନାହିଁ ଓ ଲୋକେ ସୁଖ ଶାନ୍ତିରେ ରହି ପାରିବେ ନାହିଁ ।

ଜଣେ ହୁଏତ ଭାବିବ ଯେ ଗଣତନ୍ତ୍ର ଶାସନରେ ଲୋକର ଦାୟିତ୍ୱ ଖୁବ୍ କମ୍। ସେ ଥରେ ଭୋଟ ଦେଇ ସଚ୍ଚୋଟ ଓ ଯୋଗ୍ୟ ପ୍ରତିନିଧିଟିଏ ବାଛିଦେଲେ କାମ ଶେଷ। ତେଣିକି ସେହି ପ୍ରତିନିଧିମାନେ ଭଲଭାବରେ ଶାସନ ଚଳାଇବେ। କିନ୍ତୁ ପ୍ରକୃତରେ କଥାଟା ଏତେ ସହଜ ନୁହେଁ। ପ୍ରତିନିଧି ବାଛିବାଟା ଯେତେ ସହଜ ବୋଲି ଆମେ ବୁଝୁଚୁ ପ୍ରକୃତରେ ସେତେ ସହଜ ନୁହେଁ। ଯେଉଁ ଦେଶରେ ଲୋକେ ପାଠଶାଠ ପଢ଼ିଛନ୍ତି, ଦୁନିଆର କଥା ବୁଝନ୍ତି, ଖବରକାଗଜ ପଢ଼ନ୍ତି, ଗଣତନ୍ତ୍ର ଶାସନର ମର୍ଯ୍ୟାଦା ବୁଝନ୍ତି ସେ ଦେଶର ଲୋକେ ଉପଯୁକ୍ତ ପ୍ରତିନିଧି ବାଛନ୍ତି। ଆମ ଦେଶରେ ଅବସ୍ଥା ତା' ନୁହେଁ। ଆମ ଦେଶର କୋଟି କୋଟି ଲୋକ ପାଠ ପଢ଼ି ନାହାନ୍ତି। ଖବରକାଗଜ ପଢ଼ନ୍ତି ନାହିଁ ଦୁନିଆରେ କେଉଁଠି କ'ଣ ଘଟୁଯାଉଛି ତା'ର ଖବର ଜାଣନ୍ତି ନାହିଁ। ଫଳରେ ଗଣତନ୍ତ୍ର ଶାସନର ମର୍ଯ୍ୟାଦା ବୁଝନ୍ତି ନାହିଁ। ତା' ନ ବୁଝୁଥିବାରୁ ପ୍ରତିନିଧି ବାଛିବା ବେଳେ ସବୁସମୟରେ ସାବଧାନ ହୁଅନ୍ତି ନାହିଁ ବା ଆଗ୍ରହ ପ୍ରକାଶ କରନ୍ତି ନାହିଁ। ଫଳରେ ଶାସନଟିକୁ ବିଗାଡ଼ି ଦିଅନ୍ତି। ଲୋକଙ୍କ ଭିତରେ ପ୍ରକୃତ ଶିକ୍ଷାର ପ୍ରସାର ନ ହେଲେ ଗଣତନ୍ତ୍ର କାର୍ଯ୍ୟକାରୀ ହୋଇ ପାରିବ ନାହିଁ।

କଥାଟା ଭଲ ଭାବରେ ବୁଝିବା ପାଇଁ ଆମେ କେତୋଟି ବିଷୟର ଆଲୋଚନା କରିବା। ପ୍ରଥମେ ଦେଖିବା ପ୍ରତିନିଧି ବା ଆଇନ ସଭାର ସଭ୍ୟମାନଙ୍କର କାମ ଓ କ୍ଷମତା କଣ। 'ଆଇନସଭା' —ନାମଟିରୁ ଜଣାଯାଉଛି ଯେ ଦେଶର ଯାବତୀୟ ଆଇନ ସେଇଠି ତିଆରି ହେବ। ଖଜଣା ଟିକସ କେତେ ହେବ, ଧାନଗୁଡ଼ିକ ଲୁଗାପଟା ଉପରେ କଣ ହେବ, ସେଲ୍‌ଟିକସ ବସିବ କି ନାହିଁ ଠାରୁ ଆରମ୍ଭ କରି ମଣିଷ ମାରିଲେ ଫାସୀ ହେବ କି କେବଳ ଜେଲ

ହେବ, କେତେବର୍ଷର ଝିଅକୁ ବିବାହ ଦିଆଯିବା ଭଳି ଯାବତୀୟ କଥା ଆଇନ ସମ୍ବନ୍ଧରେ ପଡ଼ି ଠିକ୍ ହୁଏ । ମନୁଷ୍ୟ ବଞ୍ଚିବା ଯାଏ, ସମାଜରେ ରହୁଥିବାଯାଏ ଦେଶର ଆଇନ କାନୁନ୍ ମାନି ତାକୁ ଚଳିବାକୁ ହେବ । ଲୁଗା ନ ମିଳିଲେ ସେ କହି ପାରିବ ନାହିଁ ଯେ 'ମୁଁ ଲଙ୍ଗଳା ହୋଇ ବୁଲିବି' । କାରଣ ଆଇନ ଅଛି ଯେ କୌଣସି ଲୋକ ଲଙ୍ଗଳା ହୋଇ ବୁଲିଲେ ତାକୁ ଜେଲଖାନାରେ ପୂରାଇ ଦିଆଯିବ । ଖାଇବାକୁ ନ ମିଳିଲେ କେହି କହି ପାରିବ ନାହିଁ ଯେ ସେ ଦଉଡ଼ି ଲଗାଇ ଦେଇ ବା ବିଷ ଖାଇ ଆତ୍ମହତ୍ୟା କରି ଦେବ । ଆଇନ ଅଛି ଯେ କେହି ଆତ୍ମହତ୍ୟା କରିବାକୁ ଗଲେ ତାକୁ କଠିନ ଦଣ୍ଡ ମିଳିବ । ଖାଇବାକୁ ନ ମିଳିଲେ ଭିକ ମାଗିବା ମଧ୍ୟ ସହଜ ନୁହେଁ । ଅନେକ ଦେଶରେ ଆଇନ ଅଛି 'ଭିକ ମାଗିବା ଅପରାଧ'—ଆମ ଦେଶରେ ମଧ୍ୟ ସେହିଭଳି ଆଇନ ହେବାକୁ ଯାଉଛି । ଜଣେ କହି ପାରିବ ନାହିଁ ଯେ ଯୁଦ୍ଧରେ ମଣିଷ ମାରିବାକୁ ହୁଏ—ମୁଁ ଭାବୁଛି ମଣିଷ ମାରିବା ଅଧର୍ମ କାମ, ଅତଏବ ମୁଁ ସୈନ୍ୟ ତାଲିକାରେ ନାମ ଲେଖାଇବି ନାହିଁ ।' ଯେଉଁ ଦେଶରେ ଯୁଦ୍ଧ ବିଦ୍ୟା ଶିଖି ଦରକାର ହେଲେ ସୈନ୍ୟ ସାଜିବାକୁ ପ୍ରତ୍ୟେକ ଲୋକ ବାଧ୍ୟ, ସେ ଦେଶରେ ଏଭଳି କହିବା ଲୋକକୁ ଧରି ନେଇ ଜେଲରେ ଭର୍ତ୍ତି କରି ଦିଆଯାଏ । ଅନେକ ଦେଶରେ ତ ପୁଣି ଅଇନ ଅଛି ଯେ ତମର ଦୋଷ ଅଛି କି ନାହିଁ ପରେ ବିଚାର ହେବ ପଛକେ—ମାଜିଷ୍ଟ୍ରେଟ ତମକୁ ବିନାବିଚାରରେ ଜେଲରେ ଠୁଙ୍କି ଦେଇ ପାରିବେ । ଆଇନ ସମ୍ବନ୍ଧରେ ଭଲ ଆଇନ ଅର୍ଥାତ ଲୋକଙ୍କର ଉପକାର ହେଲା ଭଳି ଆଇନ ହୋଇ ପାରିବ, ଲୋକଙ୍କର ଅପକାର ବା କ୍ଷତି ହେଲାଭଳି ଆଇନ ମଧ୍ୟ ହୋଇ ପାରିବ । ସବୁ କଥା ନିର୍ଭର କରେ ଲୋକଙ୍କ ପ୍ରତିନିଧି ବା ଆଇନ

'ସଭା ସଭ୍ୟଙ୍କ ଉପରେ । ଏକଛତ୍ର ଶାସନରେ ବା ରାଜ ଶାସନରେ ଜଣେ ରାଜା ଶାସନ କରୁଥିଲେ, ଆଇନ ତିଆରି କରୁଥିଲେ; ଗଣତନ୍ତ୍ର ଶାସନରେ ଶହେ ଜଣ ପ୍ରତିନିଧି ଶାସନ କରିବେ—ଆଇନ ତିଆରି କରିବେ । ଆମ ଓଡ଼ିଶାରେ ୨୫ ଜଣ 'ରାଜା' ଥିଲେ—ଏମାନଙ୍କ ୧୪୦ ଜଣ 'ରାଜା' ହେବେ । ପ୍ରଭେଦ ହେଉଛି ସେ ୨୫ ରାଜାଙ୍କୁ ଲୋକେ ବାଛୁ ନ ଥିଲେ—ଯେଉଁ ୧୪୦ ଜଣ ଲୋକ ପ୍ରତିନିଧି ବା "ରାଜା"ଙ୍କୁ ଲୋକେ ବାଛିବେ । ମୋଟ ଉପରେ ଲୋକେ ଥରେ ପ୍ରତିନିଧି ବାଛିଦେଲେ ପାଞ୍ଚବର୍ଷ ପର୍ଯ୍ୟନ୍ତ ଆମ ଦେଶର ଓ ଜୁରି ସବୁ ଦିଆଗଲା ପ୍ରତିନିଧିଙ୍କ ହାତରେ ।

ଯେଉଁ ପ୍ରତିନିଧିଙ୍କର ଏତେ କ୍ଷମତା ସେମାନେ କିପରି ବଛାଯାନ୍ତି ବା ନିର୍ବାଚିତ ହୁଅନ୍ତି ଆମେ ଦେଖିବା । କଟକ ସହରରୁ ଆଇନ ସଭାକୁ ଜଣେ ପ୍ରତିନିଧି ଯିବେ । କଟକର ଲୋକ ସଂଖ୍ୟା ପ୍ରାୟ ଏକଲକ୍ଷ । ତାଙ୍କ ଭିତରୁ ଭୋଟର ହେଉଛନ୍ତି ୫୦ ହଜାର । ପ୍ରତିନିଧି ହେବାକୁ ହେଲେ ପ୍ରଥମେ ଦରଖାସ୍ତ କରିବାକୁ ହୁଏ । କେଉଁ ତାରିଖ ଓ କେତେ ସମୟ ପର୍ଯ୍ୟନ୍ତ ଦରଖାସ୍ତ ନିଆଯିବ ସେ କଥା ଆଗରୁ ଜଣାଇ ଦିଆ ଯାଇଥାଏ । ଏକଥା ହୋଇ ପାରେ ଯେ କେବଳ ଜଣେ ଲୋକ ଦରଖାସ୍ତ ଦେଲା, ଅର୍ଥାତ ପ୍ରତିନିଧି ହେବା ପାଇଁ ପ୍ରାର୍ଥୀ ପତ୍ର ଦାଖଲ କଲା । ତାହା ହେଲେ ଆଉ ଭୋଟ ହେବ ନାହିଁ । ସେହି ହେଲା ପ୍ରତିନିଧି ବା ଆଇନ ସଭାର ସଭ୍ୟ । ସେ ଭଲ ଲୋକ ହୋଇଥାଉ ବା ଖରାପ ଲୋକ ହୋଇଥାଉ—ଆଉ କାହାରି କହିବାର କିଛି ନ ଥିବ । ଜଣେ ଯୁବା ଭୋଟର ତାକୁ ଭୋଟ ନ ଦେଇଥିଲେ ମଧ୍ୟ ସେ ୫୦ ହଜାର ଭୋଟରଙ୍କ ଦ୍ୱାରା ବଛା ଯାଇଛି ବା ନିର୍ବାଚିତ

ହୋଇ ଯିବ ବୋଲି ଧରା ଯିବ । ଆମେ ଭୋଟ ଦେଇ ନାହୁଁ—ସେ ଆମ ପ୍ରତିନିଧି ନୁହେଁ ବୋଲି ଯୁକ୍ତି କଲେ ଆଉ ଚଳିବ ନାହିଁ ।

ଜଣେ ନ ହୋଇ ରାମ ଓ ଗୋପାଳ ଦୁଇଜଣ ପ୍ରାର୍ଥୀପତ୍ର ଦାଖଲ କଲେ । ଭୋଟ ନିଆଗଲା । ରାମ ଅସତ୍ ଲୋକ, ଅଯୋଗ୍ୟ ଲୋକ, ଗୋପାଳ ସତ୍ ଲୋକ ଓ ଯୋଗ୍ୟ ଲୋକ । ଭୋଟଦିନ ଦେଖାଗଲା ଯେ ୫୦ ହଜାର ଭୋଟରଙ୍କ ଭିତରୁ କେବଳ ହଜାରେ ଜଣ ଭୋଟ ଦେବାକୁ ଆସିଛନ୍ତି । ଗୋପାଳ ସପକ୍ଷରେ କଟକ ସହରର ୪୯ ହଜାରରୁ ଅଧିକ ଭୋଟରଙ୍କର ମତ, ରାମ ସପକ୍ଷରେ ହଜାରକରୁ କମ୍ ଭୋଟରଙ୍କର ମତ । ରାମ ତା'ସପକ୍ଷରେ ଥିବା ଲୋକଙ୍କ ଭିତରୁ ୮୦୦ ଜଣଙ୍କୁ ଡାକି ଆଣିଛି—ଗୋପାଳ ପକ୍ଷର ଭୋଟରଙ୍କ ଭିତରୁ କେବଳ ୨୦୦ଜଣ ଆସିଛନ୍ତି । ଭୋଟ ଗଣତି ହେଲାବେଳେ ଦେଖାଗଲା ଯେ ରାମ ପାଇଲା ୮୦୦, ଗୋପାଳ ପାଇଲା ୨୦୦ ଭୋଟ । ରାମ ହେଲା କଟକ ସହରର ୫୦ ହଜାର ଭୋଟର ବା ଲକ୍ଷେ ଲୋକଙ୍କ ପ୍ରତିନିଧି । ଗୋପାଳ ସପକ୍ଷରେ ଲୋକମତ ନାହିଁ ବୋଲି ଜଣା ପଡ଼ିଲା । ହଜାରେ ଲୋକ ନ ଆସି କେବଳ ତିନିଜଣ ଲୋକ ଆସିଥିଲେ ମଧ୍ୟ ଦୁଇଜଣଙ୍କ ଭୋଟରେ ରାମ ପ୍ରତିନିଧି ବୋଲି ଆଇନ ସଭାକୁ ଚାଲି ଯିବ ।

ରାମ ଆଇନ ସଭାକୁ ଗଲା । ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରୁ ରାମ ଭଳି ଅନେକ ପ୍ରତିନିଧି ଆସି ଗଲେ । ସେମାନେ ସ୍ୱାର୍ଥପର ଓ ଅସତ୍ ଲୋକ ହୋଇ ଥିବାରୁ ଏ ଭଳି ଆଇନ କାନୁନ କଲେ ଯେ ଓଡ଼ିଶାର ଲକ୍ଷ ଲକ୍ଷ ଲୋକେ ଖାଇବାକୁ ପାଇଲେ ନାହିଁ କି ପିନ୍ଧିବାକୁ ପାଇଲେ ନାହିଁ । ଅନ୍ୟ କେତେକ ଲୋକ ଅସତ୍ ଉପାୟରେ ପଇସା ଠୁଳ କଲେ । ସେମାନଙ୍କୁ ଆଇନ ବାଧାଜ

ଦେଲ ନାହିଁ ବରଂ ସାହାଯ୍ୟ କଲ । ଅନ୍ୟମାନେ କେବଳ ବ୍ୟସ୍ତ ହେଲେ—କିନ୍ତୁ ଆଉ ଉପାୟ ନାହିଁ । ଏମାନେ 'ଲୋକ ପ୍ରତିନିଧି' ହୋଇ ଥିବାରୁ ସାହସର ସହିତ ଖରାପ ଓ ଲୋକଙ୍କର ଅନିଷ୍ଟ କଲାଭଳି ଆଇନ ମଧ୍ୟ କରିଗଲେ । ଯେଉଁ ଭୋଟ ବଳରେ ଲୋକେ ନିଜର ଯଥେଷ୍ଟ ଉପକାର କରିପାରି ଥାନ୍ତେ, ଖାଇ ପିଇ ସୁଖରେ ରହି ପାରି ଥାଆନ୍ତେ, ସେହି ଭୋଟ କ୍ଷମତାର ବ୍ୟବହାର ନ କଲାରୁ ୫ବର୍ଷ ପର୍ଯ୍ୟନ୍ତ ଘୋର ଦୁଃଖ କଷ୍ଟ ଭୋଗିଲେ । 'ଆମର କିଏ ଯାଉଛି ଭୋଟ ଦେବାକୁ ହୋ'—ବୋଲି ନ କହିର ଦ'ଚାରି ଘଣ୍ଟା ବା ଖୁବ୍ ହେଲେ ଓଳି ଗୋଟାଏ ସମୟ ଦେଇଥିଲେ ଲୋକେ ଆଉ ଦୁଃଖ କଷ୍ଟ ଭୋଗି ନ ଥାନ୍ତେ, ସେମାନଙ୍କ ଇଚ୍ଛା ମୁତାବକ ଆଇନ ହୋଇ ଥାନ୍ତା, ଲୋକଙ୍କର କ୍ଷତି କଲାଭଳି ଆଇନ ହୋଇ ପାରି ନ ଥାନ୍ତା । ଭୋଟ ଦେବାରେ କିଛି ପାହୁଲାଟିଏ ଖର୍ଚ୍ଚ ହୋଇଯାଉ ନ ଥିଲା । ନିଜେ ପରିଶ୍ରମ ନ କରି ନିଜର ଅବସ୍ଥା ଭଲ କରିବାକୁ ବାଟ ଥାଉ ଥାଉ ଯେ ସେବାଟ ନ ଧରିବ ତାକୁ ଆଉ ରକ୍ଷା କରିବ କିଏ ? ତମ ପତରରେ ଭାତ ବାଢ଼ି ଦିଆଗଲା—ତମ ଅଯୋଗ୍ୟତାରୁ ଯଦି ତୁମେ ଖାଇ ନ ପାରିଲ ତେଣିକି ବଳ କାହାର ?

## ଭୋଟଟି ଗୋଟିଏ କ୍ଷମତାପତ୍ର

ରାଜ୍ୟ ଶାସନ ପାଇଁ ଜଣକୁ ଭୋଟ ଦେବାର ପ୍ରକୃତ ଅର୍ଥ କଅଣ, ଭୋଟ ଦେଲା ଫଳରେ ଲୋକ କଅଣ କରିବାକୁ ଯାଏ ଇତ୍ୟାଦି କଥା ଜାଣିଲା ପରେ ଆମେ ବର୍ତ୍ତମାନ ବେଶ୍ ବୁଝିଗଲେ ଯେ ଭୋଟ ଦେବା ଅର୍ଥ ଜଣକୁ "କ୍ଷମତାପତ୍ର" ଦେବା । ଜମି ବାଡ଼ି ବା ଇଲାକା ଟିଏ ବୁଝିବା ପାଇଁ ଆମେ ଜଣକୁ କ୍ଷମତାପତ୍ର ଦେଲେ

କେତେକ ସର୍ତ୍ତରେ ଦେଉଛୁ—ଆମ ହାତରେ ପ୍ରତିକାରର କିଛି ବାଟ ରଖୁଛୁ । କିନ୍ତୁ ଶ୍ରେଷ୍ଠରେ ଯାହାଙ୍କୁ କ୍ଷମତାପତ୍ର ଦେଇ ଦେଲୁ ତାଙ୍କୁ ପାଞ୍ଚ ବର୍ଷ ପାଇଁ ବିନା ସର୍ତ୍ତରେ କ୍ଷମତାପତ୍ର ଦେଇ ଦେଲୁ କହିଲେ ଚଳେ । ମଝିରେ କେତେବେଳେ ସେ କ୍ଷମତାପତ୍ର ରଦ୍ଦ କରି ଦେବାର ସ୍ୱାଧୀନତା ଆମର ନାହିଁ । ତେଣୁ ସାଧାରଣ 'କ୍ଷମତାପତ୍ର' ଓ ଶ୍ରେଷ୍ଠ ରୂପକ କ୍ଷମତାପତ୍ର ଭିତରେ ନିଶ୍ଚୟ ତଫାତ ଅଛି । ସବ୍‌ରେଜିଷ୍ଟ୍ରାରଙ୍କ ସାମନାରେ ଦିଆଯାଉଥିବା କ୍ଷମତାପତ୍ର ବେଳେ ଆମେ ଯେତିକି ଭାବଚିନ୍ତି ସାବଧାନ ହେଉ, ଶ୍ରେଷ୍ଠ ଦେଲା-ବେଳେ ତାଠୁଁ ଢେର ବେଶୀ ସାବଧାନ ହେବା ଉଚିତ । ସେ କ୍ଷମତାପତ୍ର ସହିତ କେବଳ ସଂପତ୍ତି ରକ୍ଷଣାବେକ୍ଷଣ ବା ଆର୍ଥିକ ହାନି ଲାଭର ପ୍ରଶ୍ନ ଯୋଡା ଥାଏ । କିନ୍ତୁ ଶ୍ରେଷ୍ଠ ବୋଲି ଯେଉଁ କ୍ଷମତାପତ୍ର ଖଣ୍ଡିକ ସେଥି ସହିତ ନିଜର କେବଳ ସଂପତ୍ତି ନୁହେଁ—ମାନ ଇଜ୍ଜତ ଓ ଜୀବନର ସଂପର୍କ ରହିଛି । ସେ କ୍ଷମତାପତ୍ର ନେଲା ବାଲା ଯଦି ମୋର କ୍ଷତି କରିବାକୁ ବସିବ ମୋର ସଂପତ୍ତି ଖିନ୍-ଖରାପ କରି ଦେଇ ପାରେ—କିନ୍ତୁ ଶ୍ରେଷ୍ଠ କ୍ଷମତାପତ୍ର ନେଇଥିଲା ଲୋକ ଇଚ୍ଛାକଲେ ଏଭଳି ଆଇନ କରି ଦେଇ ପାରେ ଯେ ଅଳ୍ପ ଦୋଷରେ ମୁଁ ଫାଶୀ ପାଇ ଯାଇ ପାରେ । ମୋ ପ୍ରତିନିଧିର କାର୍ଯ୍ୟ ଫଳରେ ଅନ୍ୟ ଦେଶ ଲୋକଙ୍କ ଆଗରେ ମୋର ସମ୍ମାନ କ୍ଷୁଣ୍ଣ ହୋଇ ପାରେ । ଏ କଥାର ଠିକ୍ ଓଲଟାଟା ମଧ୍ୟ ସମ୍ଭବ । ମୋ ପ୍ରତିନିଧି ଏଭଳି ସୁନ୍ଦର ବ୍ୟବସ୍ଥା ଓ ଆଇନ କରି ଦେବ ଯେ ମୋ ଜୀବନ ସଂପୂର୍ଣ୍ଣ ନିରାପଦ ରହିପାରେ ଓ ବାହାରେ ମୋର ସମ୍ମାନ ଖୁବ୍ ବଢି ଯାଇ ପାରେ । ମୋ ପ୍ରତିନିଧି ଇଚ୍ଛା କଲେ ଓ ତାର ଯଦି ନିଜ ଇଚ୍ଛା ପୂରଣ କରିବା ପାଇଁ ଯୋଗ୍ୟତା ଥାଏ ମୋ'ର ଆର୍ଥିକ ଅବସ୍ଥାର ଯଥେଷ୍ଟ ଉନ୍ନତି ହୋଇପାରେ । ଶ୍ରେଷ୍ଠ

କ୍ଷମତାପନ୍ନ ଯାହାଙ୍କୁ ପାଞ୍ଚବର୍ଷ ପାଇଁ ଦେଇଛୁ ସେ ଆମର ମତ ନ ନେଇ, ଆମକୁ ନ ପଚାରି ତାକୁ ଆହୁରି ଦୁଇ ତିନି ବର୍ଷ ବଢ଼ାଇ ଦେଇ ପାରିବେ ।

ତା ହେଲେ ଭାବିବାର କଥା ଶ୍ରେଷ୍ଠ କ୍ଷମତାକୁ ଠିକ୍ ଭାବରେ ବ୍ୟବହାର କଲେ ଆମେ ଯେତିକି ଉପକାର ପାଇବା ବ୍ୟବହାର କରି ନ ଶିଖିଲେ ସେତିକି ଅପକାର ହେବ । ଆମେ ଇଚ୍ଛାକଲେ ଆମର ସୁଖ ଶାନ୍ତି ଆମରି ହାତରେ—ସାମାନ୍ୟ ଟିକିଏ ଅସୁବିଧା ହେଲେ ଅଶାନ୍ତି ଓ ଦୁଃଖକୁ ଡାକି ଆଣିବା । ଏହାର ଆଉ ଗୋଟିଏ ବିଶେଷତ୍ୱ ହେଉଛି ଯେ ଆମେ କ୍ଷମତାପନ୍ନ ଦେଉ ବା ନ ଦେଉ ଜଣେ କେହି ଆମର ପ୍ରତିନିଧି ବୋଲି ମରିଚ୍ୟୁ ଦେଇ ଦେଇ ପାରିବ—ତା'ପାଇଁ ଖାଲି କେବଳ ଦୁଇ ଜଣ ଦସ୍ତଖତ କରି ଥିଲେ ହେଲା । ସେଇଥିପାଇଁ ଶ୍ରେଷ୍ଠଟିକୁ ନିଆଁ ସହିତ ତୁଳନା କରାଯାଏ । ନିଆଁକୁ ବ୍ୟବହାର କରି ଜାଣିଲେ ଭାତ ତିଅଣ ରାନ୍ଧିବାଠାରୁ ଆରମ୍ଭ କରି କାରଖାନା ଆଦିର କାମ ଚଳିବ, ବ୍ୟବହାର କରି ନ ଜାଣିଲେ, ନିଜ ଅଜାଡିଆରରୁ ଘୁଞ୍ଚି ଦେଲେ ଘରପୋଡି ଠାରୁ ଆରମ୍ଭ କରି ଆହୁରି ଅନେକ ସର୍ବନାଶ ଘଟିବ । ଶ୍ରେଷ୍ଠଟି କଣ ସେ କଥା ଭଲ ଭାବରେ ବୁଝି ତାକୁ ଠିକ୍ ଭାବରେ ବ୍ୟବହାର କରି ଜାଣିଲେ ଶ୍ରେଷ୍ଠର ନିଜର ରାଜା ହୋଇ ରହିବ, ଠିକ୍ ଭାବରେ ବ୍ୟବହାର କରି ନ ଜାଣିଲେ ଅନ୍ୟର ଗୋଲାମ ହୋଇ ଯିବ । ବର୍ତ୍ତମାନ ଲୋକଙ୍କୁ ଯେଉଁ ଶ୍ରେଷ୍ଠ କ୍ଷମତା ମିଳିଛି ତାକୁ ଯଦି ଲୋକେ ଠିକ୍ ଭାବରେ ପ୍ରୟୋଗ ନ କରନ୍ତି, ସାବଧାନ ନ ହୁଅନ୍ତି ତେବେ କିଏ କହିବ ଯେ ଦେଶରେ ଏକଛତ୍ର ଶାସନ ନ ଚାଲିବ ? କେତେକ ଦେଶରେ ଗଣତନ୍ତ୍ର

ଶାସନ ଅନେକ କାଳ ଗ୍ଭଲିଲା ପରେ ମଧ୍ୟ ଏକ ଛଦ୍ମ ଶାସନର ଆରମ୍ଭ ହୋଇଛି । ଲୋକଙ୍କର ଅସାବଧାନତା ଫଳରେ ଏହା ସମ୍ଭବ ହେଲା ।

ସାଧାରଣ କ୍ଷମତାପତ୍ରଟିଏ ରେଜିଷ୍ଟ୍ରୀ କରିବାକୁ ହେଲେ ଆମେ ସବରେଜିଷ୍ଟ୍ରାରଙ୍କ ପାଖକୁ ଯାଉ, ସେଠି ଫିସ୍ ଦାଖଲ କରୁ—ଧା'ପରେ ଯାଇ ଦଲିଲଟି ରେଜିଷ୍ଟ୍ରୀ ହୁଏ । କିନ୍ତୁ ଭୋଟ ରୂପକ କ୍ଷମତାପତ୍ର କେତେ ସହଜରେ ରେଜିଷ୍ଟ୍ରୀ ହୋଇ ଯାଉଛି । ଭୋଟ ଦଲିଲ ରେଜିଷ୍ଟ୍ରୀ କରିବା ଅଫିସର ଆମ ଗାଁକୁ ଆସୁଛନ୍ତି ପାହୁଲାଟିଏ ସୁଦ୍ଧା ଖର୍ଚ୍ଚ ନ କରି ଆମ କ୍ଷମତାପତ୍ର ରେଜେଷ୍ଟ୍ରୀ ହୋଇଯାଉଛି । ଭୋଟ କାଗଜଟି ହେଉଛି ଆମର "କ୍ଷମତାପତ୍ର ଦଲିଲ ।"

## ସାଦା ନିର୍ବାଚନ

ଆମ ଦେଶରେ ବ୍ୟବସ୍ଥା ଅଛି ଯେ ପ୍ରତି ପାଞ୍ଚବର୍ଷରେ ଥରେ ଲେଖାଏଁ ଭୋଟ ନିଆଯିବ । ବହୁ ଭାବି ଚିନ୍ତି ଆମେ ଯାହାଙ୍କୁ ଭୋଟ ଦେଉଁ ସେହିମାନେ ତ ଅନେକ ବର୍ଷ ପର୍ଯ୍ୟନ୍ତ ଦେଶକୁ ଶାସନ କରନ୍ତି —ମଝିରେ ଏଭଳି ସାଦା ନିର୍ବାଚନ କରାଇବାର ଉଦ୍ଦେଶ୍ୟ କଣ ?

ଉଦ୍ଦେଶ୍ୟ ହେଲା ହିସାବ ବୁଝିବା । ଆମେ ସେମାନଙ୍କୁ ଯେଉଁ ଗୁରୁ ଦାୟିତ୍ୱ ଦେଇଥିଲୁ, ତାହା ସେମାନେ ଠିକ୍ ଠିକ୍ ତୁଲାଇ ଅଛନ୍ତି କି ନାହିଁ ସେ ବିଷୟ ଆମକୁ ଆସି କହିବେ । ଆମେ ଯଦି ଭାବିଲୁ ଯେ ସେମାନେ ଆମର ଭଲ କରିବା ପାଇଁ ସାଧ୍ୟମତେ ଚେଷ୍ଟା କରିଛନ୍ତି ଓ ଭବିଷ୍ୟତରେ କରିବେ ତେବେ ସେମାନଙ୍କୁ ପୁଣି ଥରେ କ୍ଷମତାପତ୍ର ବା ଭୋଟ ଦେଇ ଲୋକଙ୍କର ସେବା

କରିବାର ବାଟ ଫିଟାଇ ଦେଲୁ, ନ ହେଲେ ଯଦି ଆମେ ଭାବିଲୁ ଯେ ସେମାନେ ଆଶାନୁରୂପ କାମ କରି ନାହାନ୍ତି ବା ଯାହା କରିଛନ୍ତି ସେଥିରେ ଆମର ଅନାସ୍ଥା ହେବ । ତାହେଲେ ଆମେ ତାଙ୍କୁ ପରିଷ୍କାର କହି ଦେଲୁ "ତୁମ ଦ୍ୱାରା କାମ ଚଳିବ ନାହିଁ"।

ପ୍ରତିନିଧି ବଦଳାଇବାର ବା ନୂଆ ପ୍ରତିନିଧି ନିଯୁକ୍ତ କରିବାର ସୁଯୋଗ ପାଞ୍ଚବର୍ଷରେ ଥରେ ଲୋକମାଏ ଦିଆଯିବା ନିଶ୍ଚୟ ଉଚିତ । ପାଞ୍ଚବର୍ଷରେ ଥରେ ଲୋକଙ୍କ ସାମନାକୁ ଯାଇଁ ହିସାବ ଦେବାକୁ ପଡିବ ବୋଲି ଜାଣିଥିଲେ ପ୍ରତିନିଧିମାନେ ଲୋକଙ୍କର ଅନାସ୍ଥା କଲା ଭଳି କୌଣସି କାର୍ଯ୍ୟ କରିବାକୁ ସାହସ କରିବେ ନାହିଁ । ଦେଶକୁ ଏକଛତ୍ରବାଦ ଆଡ଼କୁ ଟାଣି ନେବେ ନାହିଁ ।

ପ୍ରତିନିଧିମାନେ ମଧ୍ୟ ନିଜ ସ୍ୱାର୍ଥ ଓ ନିରାପଦତା ଦୃଷ୍ଟିରୁ ମଝିରେ ମଝିରେ ଲୋକଙ୍କ ମତ ବୁଝି ନିଅନ୍ତି । ସେମାନେ ଯେତେବେଳେ ଭୋଟ ନେଇ ଥିଲେ ସେତେବେଳେ ଦେଶର ଅବସ୍ଥା ଯାହା ଥିଲା ପାଞ୍ଚବର୍ଷ ପରେ ଆଜି ହୁଏତ ସେପରି ନାହିଁ—ସମ୍ପୂର୍ଣ୍ଣ ବଦଳି ଯାଇଛି । ସେ ଅବସ୍ଥାରେ ସେମାନେ ଯାହା କରିବାକୁ ଯିବେ ସେଥିରେ ଲୋକଙ୍କ ମତ ଅଛି କି ନାହିଁ ଲୋକେ କହିଦେବା ଉଚିତ ।

ଗୁଣ ଆଉ ବିଚାର କରି ଲୋକେ ଯାହା ମତ ଦେବେ ପ୍ରତି-ନିଧିମାନେ ସେହି ଭଳି ଦେଶକୁ ଚଳାଇବେ ।

ଏବେ ଯିନା ଆମ ଦେଶରୁ ଜମିଦାରି ଉଠିଛି, ଜମିଦାରମାନେ ତାଙ୍କ ତହସିଲଦାର ବା ଗୁମାସ୍ତାମାନଙ୍କୁ ଖଜଣା ଆଦାୟ ଆଦି କାମ କରିବା ପାଇଁ କ୍ଷମତାପତ୍ର ଦେଇ ଥାନ୍ତି । ପ୍ରତିବର୍ଷ ପୁନିଅଁ ଦିନ ସେମାନଙ୍କଠାରୁ କାଗଜପତ୍ର ବୁଝି ନେଇ ନୂଆ ପରୱାନା ଦେଇ

ଦିଅନ୍ତି । କାଗଜ ବୁଝି ନୂଆ ପରୱାନା ଦେଲାପରେ ତହସିଲ-ଦାରଙ୍କ ଉପରେ ଆଉ କୌଣସି ଦୋଷ ଲଦି ଦିଆଯାଏ ନାହିଁ । ତାଙ୍କୁ ସାନ ପରୱାନା ଦେବା ଅର୍ଥ ହେଉଛି 'ଠିକ୍ ଅଛୁ ବୋଲି' କହି ଦିଆଯାଇଛି । ଆମ ପ୍ରତିନିଧି ବା ଏମ୍: ଏଲ୍; ଏ: ମାନେ ଭୋଟରମାନଙ୍କ ତହସିଲଦାର ବା ଗୁମାସ୍ତା ଭଳି । ପାଞ୍ଚବର୍ଷ ପରେ ତାଙ୍କୁ ଭୋଟ ଦେଲେ ତାଙ୍କ ଠାରୁ ଜାଣି ହିସାବପତ୍ର ବୁଝି ନେଇ ସବୁ ଠିକ୍ ଅଛି ଓ ଏଣିକି କାମ ଚଲାଅ ବୋଲି ଭୋଟରମାନେ କହି ଦେଲେ ।

## ନିର୍ବାଚନ ଇସ୍ତାହାର

ଧରି ନିଅନ୍ତୁ ମୋର ଗୁଡ଼ାଏ ଜମି, ବାଡ଼ ପୋଖରୀ, ଗଛ, ମାଛ, ଜଙ୍ଗଲ ଓ କଲକାରଖାନା ଅଛି । ସେ ସବୁ ବୁଝି ଚଲାଇବାର ସୁଯୋଗ ବା ସୁବିଧା ମୋର ନାହିଁ । ମୁଁ ଜଣକୁ କ୍ଷମତା—ପତ୍ର ଦେବାକୁ ଚାହିଁଲି । ସେଥିପାଇଁ ଖବର କାଗଜରେ ବିଜ୍ଞାପନ ଦେଲାରୁ ଦୁଇଜଣ ଲୋକ ମୋ ପାଖରେ ପହଞ୍ଚିଲେ । ସେମାନେ ହେଲେ ମୋ କ୍ଷମତାପତ୍ର ପାଇବା ପାଇଁ ପ୍ରାର୍ଥୀ । ଜଣେ ମୋତେ କହିଲେ—"ମୋତେ ଯଦି କ୍ଷମତାପତ୍ର ପାଞ୍ଚବର୍ଷ ପାଇଁ ଦେବେ, ମୁଁ ଅମୁକ ଅମୁକ କାମ କରି ଆପଣଙ୍କର ଆୟ ଏହି ଉପାୟରେ ବଢ଼ାଇବି । ଆପଣଙ୍କର ପଡ଼ିଆ ଜମିକୁ ହିଡ଼ିଆ କରି ଫସଲ ଅମଦାନୀ କରାଇ ଦେବି । କଳ କାରଖାନା ଭଲ ଭାବରେ ଚଲାଇ ବର୍ତ୍ତମାନ ଆପଣ ଯେତିକି ଲାଭ ପାଉଛନ୍ତି ତା ଅପେକ୍ଷା ବେଶି ଦେଇ ଦେବି—ମୋ ନିଜ ଖର୍ଚ୍ଚ ଯାଇ ମୁଁ ଏତିକି ନେବି ।"

ଦ୍ୱିତୀୟ ଲୋକଟି ସେ କଣ କରି ପାରିବ ସବୁ କଥା ମୋତେ କହିଲା । ତେଣିକି ମୁଁ ବିଚାର କରିବି ଏ ଦୁଇ ଜଣଙ୍କ ଯୋଜନା

ଭିତର, କେଉଁଟି ଭଲ । ଅନୁଭବ ମଧ୍ୟ ଖୁବ ଦେଖିବ ଜଣେ ଯାହା କହୁଛି ତାକୁ କାମରେ କରିବାର ଯୋଗ୍ୟତା ତାହାର ଅଛି କି ନାହିଁ । କେବଳ ଭଲ କଥା କହିଲେ ଚଳିବ ନାହିଁ । କାମରେ ପାରିବ କିନାହିଁ ସେଇଟା ଭାବିବା କଥା । ସେ ଲୋକର ଅତୀତ କଣ ଥିଲା ଓ ବର୍ତ୍ତମାନ ଅବସ୍ଥାରେ କଣ ଅଛି ତାହା ମଧ୍ୟ ଠିକ୍‌ଏ ବୁଝି ନେବ । ଏ ସବୁ ପରେ ଜଣକୁ କ୍ଷମତାପତ୍ର ରେଜିଷ୍ଟ୍ରୀ କରି ଦେବ ଓ ସେଇ କ୍ଷମତାପତ୍ରରେ ଲେଖି ଦେବ—'ତୁମେ ଅମୁକ ଲୋକ ମୋ ସଂପତ୍ତି ରକ୍ଷଣା ବେକ୍ଷଣ ଓ ଉନ୍ନତି ପାଇଁ ଅମୁକ ଅମୁକ କାମ କରିବ ବୋଲି ଜବାବ ଦେବାରୁ ସେଇ କାର୍ଯ୍ୟ କରିବା ପାଇଁ ଏତଦ୍ୱାରା ମୁଁ ତୁମ୍ଭଙ୍କୁ କ୍ଷମତା ଦେଲି ।'

ନିର୍ବାଚନ ବେଳେ ଠିକ୍ ସେଇକଥା ହୁଏ । ପ୍ରାର୍ଥୀମାନେ ଆସି ଭୋଟରଙ୍କୁ କୁହନ୍ତି—"ଆମକୁ ଭୋଟ ଦେଇ ପଠାଇଲେ ଆମେ ପାଞ୍ଚବର୍ଷ ଭିତରେ ଏହି ଭଳି ଭାବରେ ଉନ୍ନତ କରିବୁ, ଲୋକଙ୍କୁ ଶସ୍ତାରେ ଭାତ ଲୁଗା ଆଦି ଯୋଗାଇ ଦେଇ ସୁଖରେ ରଖିବୁ ଇତ୍ୟାଦି ଇତ୍ୟାଦି ।" ଏହି କଥା ଗୁଡ଼ିକ ଲେଖି ସେମାନେ ଗୋଟିଏ ଗୋଟିଏ ନିର୍ବାଚନ ଇସ୍ତାହାର ଭୋଟରଙ୍କ ଆଗରେ ରଖନ୍ତି । ଭିନ୍ନ ଭିନ୍ନ ପ୍ରାର୍ଥୀ ବା ଦଳ ସେମାନଙ୍କ ନିର୍ବାଚନ ଇସ୍ତାହାର ବାହାର କଲା ପରେ ଭୋଟରମାନେ ଦେଖନ୍ତି କେଉଁ ନିର୍ବାଚନ ଇସ୍ତାହାର ଅନୁସାରେ ଦେଶର ଶାସନ ଚଳିଲେ ଓ ଦେଶକୁ ଚଳାଇଲେ ଲୋକଙ୍କର ପ୍ରକୃତ ଉନ୍ନତି ହେବ । ଯେଉଁ ପ୍ରାର୍ଥୀ ବା ଦଳର ନିର୍ବାଚନ ଇସ୍ତାହାର ଭୋଟର ମାନଙ୍କ ମନକୁ ପାଏ ସେହିମାନଙ୍କୁ ଲୋକେ ଭୋଟ ଦିଅନ୍ତି । ଭୋଟଟା ହେଲା "କ୍ଷମତା ପତ୍ର" । ସେ କ୍ଷମତାପତ୍ରରେ ତ ପୁଣି

କେତେକ ସର୍ତ୍ତ ରହିବାର କଥା । ନିର୍ବାଚନ ଇସ୍ତାହାରରେ ଥିବା ପ୍ରତିଶ୍ରୁତି ଗୁଡ଼ିକ "ଭୋଟ କ୍ଷମତା ପତ୍ର"ର ସର୍ତ୍ତ ବୋଲି ଧରାଯାଏ, ଅର୍ଥାତ ଭୋଟରମାନେ ପ୍ରାର୍ଥୀଙ୍କୁ କୁହନ୍ତି—ଦେଶକୁ ଚଲାଇବା ପାଇଁ ତୁମ୍ଭେ ଏହିଭଳି କାର୍ଯ୍ୟ କରିବ ଓ ଦେଶର ଉନ୍ନତି ପାଇଁ ଏହି ଏହି କାର୍ଯ୍ୟ କରିବ ବୋଲି ଆମ୍ଭମାନଙ୍କୁ ପ୍ରତିଶ୍ରୁତି ଦେବାରୁ ତୁମ୍ଭମାନଙ୍କ ପ୍ରତିଶ୍ରୁତିରେ ବିଶ୍ୱାସ ରଖି ସେହି ଗୁଡ଼ିକ କାର୍ଯ୍ୟରେ ପରିଣତ କରିବାପାଇଁ ଆମ୍ଭେମାନେ ଭୋଟ ବା 'କ୍ଷମତା ପତ୍ର' ଦେଲୁ । ଆମ୍ଭେମାନେ ବିଶ୍ୱାସ କରୁଛୁ ଯେ ତୁମ୍ଭେ ଆମ ପ୍ରତି ବିଶ୍ୱାସ-ଘାତକତା କରିବ ନାହିଁ । ଯେଉଁ ପ୍ରାର୍ଥୀ ବା ଦଳ ଭୋଟ ପାଇଗଲା ପରେ ସେମାନଙ୍କ ନିର୍ବାଚନ ଇସ୍ତାହାର ଅନୁସାରେ କାମ ନ କରି ଯାହା ପ୍ରତିଶ୍ରୁତି ଦେଇଥାନ୍ତି ତାର ଓଲଟା କାମ କରନ୍ତି ସେମାନେ ଭୋଟରଙ୍କ ପ୍ରତି ବିଶ୍ୱାସଘାତକତା ବା ଦଗାବାଜି କଲେ ବୋଲି ଧରାଯାଏ ।

## ଦଳଗତ ଶାସନ

ଦେଶଟା ଯାକର ଲୋକେ ତ କେବଳ ଜଣକୁ ବାଛୁ ନାହାନ୍ତି—ବହୁସଂଖ୍ୟକ ପ୍ରତିନିଧି ନିର୍ବାଚିତ ହୋଇଛନ୍ତି ସେମାନଙ୍କ ଭିତରେ ଆଲୋଚନା ହୋଇ, ବିଚାର ହୋଇ ସ୍ଥିର ହୁଏ କି କି ଆଇନ କରାଯିବ ଓ ଲୋକଙ୍କର ମଙ୍ଗଳପାଇଁ କେଉଁ ବାଟ ବଛା ଯିବ । ଅନୁଭୂତିରୁ ଦେଖାଗଲା ଦଳେଲୋକ ଏକମନହୋଇ ଗୋଟାଏ ନିର୍ଦ୍ଦିଷ୍ଟ ପନ୍ଥା ଧରି ନଚାଲିଲେ ଓ ଦେଶକୁ ନଚଲାଇଲେ ଭଲକାମ ଆଗେଇ ପାରିବନାହିଁ । "ଏହିଭଳି ଭାବରେ ଦେଶର ଉନ୍ନତି କରିବା ବା ଦେଶକୁ ଚଲାଇବା"—ବୋଲି ଯେଉଁ ମାନେ ଏକମତହୋଇ ଗଲେ

ସେମାନେ ଗୋଟାଏ ଦଳବାନ୍ଧିଲେ । ସେହିଦଳ ଲୋକଙ୍କୁ ଆସି କହିଲେ—"ଆମ ଦଳକୁ ଯଦି ଭୋଟ ଦେବ ଆମେ ଏହି କାମ କରିବୁ—ଏଇ ହେଲା ଆମର ନିର୍ବାଚନ ଇସ୍ତାହାର" ! ଗୋଟିକରୁ ବେଶି ଦଳ ସୃଷ୍ଟି ହୋଇ ଭୋଟରଙ୍କ ପାଖରେ ଯାଇ ପହଞ୍ଚନ୍ତି ଓ ସମସ୍ତେ ନିଜ ନିଜ କଥା ବୁଝାନ୍ତି । ତେଣିକି ଲୋକେ ଠିକ୍ କରନ୍ତି କେଉଁ ଦଳକୁ ଭୋଟ ଦେବେ । ସେତେବେଳେ ଭୋଟରମାନେ ପ୍ରାର୍ଥୀର ଯୋଗ୍ୟତା ପ୍ରତି ବିଶେଷ ଦୃଷ୍ଟି ନ ଦେଇ ଦଳର ପ୍ରତିଶ୍ରୁତି ଉପରେ ଜୋର ଦିଅନ୍ତି । ଯଦି ସେମାନଙ୍କର ବିଶ୍ୱାସ ହୁଏ ଯେ ଦଳର କାର୍ଯ୍ୟକ୍ରମ ଭଲ ସେମାନେ ଠିକ୍ କରିନିଅନ୍ତି ସେହିଦଳକୁ ବା ସେହିଦଳର ପ୍ରାର୍ଥୀକୁ ଭୋଟଦେବେ ବୋଲି । ଦଳରୁ ଲୋକେ ଏକାଠି ବସି ସ୍ଥିର କରନ୍ତି କେଉଁମାନଙ୍କୁ କେଉଁଠୁ ପ୍ରାର୍ଥୀ ଠିଆ କରାଇବେ । ପ୍ରାର୍ଥୀ ଭୋଟରମାନଙ୍କୁ କୁହେ—'ମୁ ଅମୁକ ଦଳର ପ୍ରାର୍ଥୀ—ମୋତେ ଭୋଟ ଦିଅ ।' ଦଳ ତରଫରୁ କୁହାଯାଏ—"ଏହିପ୍ରାର୍ଥୀକୁ ଆମ ଦାୟିତ୍ୱରେ ଆମେ ଠିଆ କରାଉଛୁ । ଆମେ ପ୍ରତିଶ୍ରୁତି ଦେଉଛୁ ଯେ ଆମ ଦଳ ଯେଉଁ କାମ କରିବ ବୋଲି କହୁଛି ଏହିପ୍ରାର୍ଥୀ ସେହିକାମ ଦଳର ଶୃଙ୍ଖଳା ମାନି କରିବ ।"

ଭିନ୍ନ ଭିନ୍ନ କାର୍ଯ୍ୟପନ୍ଥା ନେଇ ଭିନ୍ନ ଭିନ୍ନ ଦଳ ଗଢ଼ାଯାଏ ।

ବିଲାତ ଭଳି ଗୋଟିଏ ଛୋଟ ଦେଶରେ ପ୍ରତିଦଳର ଦେଶର ସବୁଆଡ଼େ ଅଳ୍ପ ବହୁତେ ଶାଖାରହିଛି । କିନ୍ତୁ ଭାରତ ଭଳି ଏତେ ବଡ଼ ଦେଶଟାରେ ସବୁଦଳର ସବୁ ଅଂଚଳ ବା ପ୍ରଦେଶରେ ଶାଖା ନାହିଁ । କଂଗ୍ରେସ, ପ୍ରଜା ସୋସଲିଷ୍ଟ ଓ କମ୍ୟୁନିଷ୍ଟଙ୍କୁ ଛାଡ଼ିଦେଲେ ଆମ ଦେଶରେ ଅନ୍ୟ ନିଖିଳ ଭାରତୀୟ ଦଳ ନାହାନ୍ତି କହିଲେ

ବିଶେଷ କିଛି ଭୁଲ ହେବ ନାହିଁ । ହିନ୍ଦୁ ମହାସଭାର ଏକାଧିକ ପ୍ରଦେଶରେ ଶାଖା ଅଛି । ଏମାନଙ୍କ ବ୍ୟତୀତ ପ୍ରଦେଶର ନାନା ସମସ୍ୟାକୁ ମୂଳକରି ପ୍ରାଦେଶିକ ଦଳମାନ ଗଢା ଯାଇଛି । ଆମ ଓଡ଼ିଶାର "ଗଣତନ୍ତ୍ର ଦଳ" ସେଥିଭିତରୁ ଗୋଟିଏ ।

ଆମ ଦେଶରେ ଦୁଇଟା ଶାସନ ଏକା ବେଳକେ ଚାଲିଛି—ଗୋଟାଏ ହେଲା କେନ୍ଦ୍ର ଶାସନ, ଅନ୍ୟଟି ପ୍ରାଦେଶିକ ଶାସନ । ଦେଶରକ୍ଷା, ରେଲ ଚଳାଚଳ, ଡାକତାର, ଶୁଳ୍କ, ଇନ୍‌କମ୍‌ଟାକସ୍ ଆଦାୟ ପ୍ରଭୃତି ହେଲା କେନ୍ଦ୍ର ସରକାରର ଦାୟିତ୍ୱ, ବାକି ଗୁଡ଼ିକ ପ୍ରାଦେଶିକ ସରକାରମାନେ ବୁଝନ୍ତି । ନିଖିଳ ଭାରତୀୟ ଦଳମାନେ କୁହନ୍ତି—ଯେଉଁଦଳର କେନ୍ଦ୍ର ଓ ପ୍ରଦେଶ ଉଭୟ ସରକାର ଉପରେ କିଛିନା କିଛି ପ୍ରଭାବ ନରହିବ ସେ ଦଳ ପକ୍ଷରେ ଦେଶର ଉପକାର କରିବା ହୁଏତ ସହଜ ନୁହେଁ । ତେଣୁ ନିଖିଳ ଭାରତୀୟ ଦଳକୁହିଁ ଭୋଟ ଦିଅ ।" ପ୍ରାଦେଶିକ ଦଳମାନେ କୁହନ୍ତି—"ଏହି ପ୍ରଦେଶର ସ୍ୱାର୍ଥ ଜଗିବୁ ବୋଲି ଆମେ ବାହାରିଛୁ, ନିଖିଳ ଭାରତୀୟ ଦଳମାନେ ଆମ ପ୍ରଦେଶର ସ୍ୱାର୍ଥକୁ ସ୍ୱତନ୍ତ୍ର ଭାବରେ ନ ଭାବି; ସବୁକଥା ସମଗ୍ର ଦେଶର ସ୍ୱାର୍ଥ ଦୃଷ୍ଟିରୁ ବିଚାର ଥିବାକଥା କହି ଆମ ପ୍ରଦେଶର ସ୍ୱାର୍ଥକୁ ହୁଏତ ବଳି ଦେଇ ଦେବେ । ତେଣୁ ପ୍ରାଦେଶିକ ସ୍ୱାର୍ଥର ପ୍ରହରୀ ରୂପେ ଆମକୁହିଁ ଭୋଟ ଦିଅ—ସେମାନଙ୍କୁ ନୁହେଁ ।"

ଭୋଟରମାନେ ନାନା ଅଙ୍ଗୁ ବିଚାର କରି ଦେଖନ୍ତି କେଉଁ ଦଳକୁ ଭୋଟ ଦେବେ ।

ଦଳ ବାହାରେ ସ୍ୱାଧୀନ ପ୍ରାର୍ଥୀ ମଧ୍ୟ ଠିଆ ହୁଅନ୍ତି । ସେମାନେ କୌଣସି ପକ୍ଷରେ ଯୋଗ ଦିଅନ୍ତି ନାହିଁ । ବିଶେଷ ଯୋଗ୍ୟତା

ନଥିଲେ ସ୍ୱାଧୀନ ପ୍ରାର୍ଥୀଙ୍କ ପକ୍ଷରେ ଭୋଟରେ ଜିଣିବା କଷ୍ଟ ହୁଏ । ସେମାନେ କହନ୍ତି କୌଣସି ଦଳର ଶୃଙ୍ଖଳା ଭିତରେ ବନ୍ଧା ହୋଇ ନ ଥିବାରୁ ସ୍ୱାଧୀନ ଭାବରେ ମତ ଦେବାର ଅଧିକାର ସେମାନଙ୍କରହିଁ ରହିଛି । ଭୋଟରମାନେ ଯଦି ଦେଖନ୍ତି ଯେ ପ୍ରାର୍ଥୀ ଅତୀତରେ କେବେ କୌଣସି ଲୋକ ସ୍ୱାର୍ଥ ବିରୋଧୀ କାର୍ଯ୍ୟ କରିନାହିଁ ତେବେ ଯାଇ ସେମାନେ ତାଙ୍କୁ ଭୋଟ ଦିଅନ୍ତି ।

କିନ୍ତୁ ଭୋଟରମାନେ କୌଣସି ନା କୌଣସି ଦଳର ପ୍ରାର୍ଥୀଙ୍କୁ ଭୋଟ ଦେବା ପାଇଁ ଅଧିକ ପସନ୍ଦ କରନ୍ତି—କାରଣ ପ୍ରାର୍ଥୀ ଯଦି ସେମାନଙ୍କୁ ଠକାଏ, ଦୁଃଖସୁଖ ହାଲ ନବୁଝି ମୁହଁ ଛପା ଦେଇ ରହିଯାଏ ତେବେ ଭୋଟରମାନେ ସେହି ଦଳକୁ ଦାୟୀ କରିବେ । ସେମାନେ କହିବେ ଯେ ଯଦି ସେମାନେ "ଜଣେ" ପ୍ରାର୍ଥୀଙ୍କୁ ଭୋଟ ଦେଇଛନ୍ତି ତାର କାର୍ଯ୍ୟକଳାପ ପାଇଁ ଦଳର ସମସ୍ତେ ଅର୍ଥାତ୍ ଦଳଟି ଦାୟୀ । ଭିନ୍ନ ଭିନ୍ନ ଦଳ ନିଜର ପ୍ରାର୍ଥୀଙ୍କୁ ଶୃଙ୍ଖଳା ଭିତରେ ରଖନ୍ତି ଓ ଦଳର ବଦନାମ ହେଲାଭଳି କାମକଲେ ସେ ତାଙ୍କୁ ଦଳରୁ ବାହାର କରି ଦିଅନ୍ତି ।

ଜଣେ ବିଶିଷ୍ଟ ଲୋକ ଲେଖିଛନ୍ତି—ଦେଶର ଭୋଟର ମାନେ ହେଲେ ଗୋଟିଏ ଗୋଟିଏ କମ୍ପାନୀର ସେୟାର ହୋଲଡର୍ ବା ଅଂଶୀଦାର ଭଳି । ଦଳମାନେ ହେଲେ କମ୍ପାନୀର ମ୍ୟାନେଜିଂ ଏଜେଣ୍ଟ ମାନଙ୍କ ଭଳି । ସେୟାର ହୋଲଡ଼ର୍ ବା ଅଂଶୀଦାରମାନେ ଗୋଟିଏ ଗୋଟିଏ ଦଳକୁ ଭୋଟ ଦେଇ ମ୍ୟାନେଜିଂ ଏଜେଣ୍ଟସ୍ ନିଯୁକ୍ତ କରିଦିଅନ୍ତି । ସେହିମାନେ ସେୟାର ହୋଲଡର୍ ମାନଙ୍କ ତରଫରୁ କମ୍ପାନୀକୁ ଚଳାନ୍ତି ଓ ମଝିରେ ମଝିରେ ସେୟାର ହୋଲଡର୍ ଅର୍ଥାତ୍ ଭୋଟରମାନଙ୍କ ହିସାବ ବୁଝାଇ ଦେଇ ସାନ

ନିଯୁକ୍ତ ହୁଅନ୍ତୁ । ଲୋକେ ଯଦି ସେ ଦଳର କାମରେ ସନ୍ତୁଷ୍ଟ ନ ହୁଅନ୍ତି ତେବେ ଅନ୍ୟଦଳକୁ ମ୍ୟାନେଜିଂ ଏଜେଣ୍ଟସ୍ ଭାବରେ ନିଯୁକ୍ତ କରନ୍ତି ।

## ବିରୋଧୀ ଦଳ

ଗଣତନ୍ତ୍ର ଶାସନ ଚାଲିଲେ ଗୋଟିଏ ବିରୋଧୀ ଦଳ ନିଶ୍ଚୟ ରହିଯିବ । ଯେଉଁ ଦଳର ଅଧିକ ପ୍ରାର୍ଥୀ ନିର୍ବାଚିତ ହେଲେ ସେ ଦଳ ଶାସନ ଚଳାଇବେ—ଯେଉଁ ଦଳର ପ୍ରାର୍ଥୀ ଅଳ୍ପ ସଂଖ୍ୟାରେ ଆସିଲେ ସେମାନେ ଅସେମ୍ବ୍ଲି ବା ପାର୍ଲାମେଣ୍ଟରେ ବିରୋଧୀଦଳ ହୋଇ ରହିବ । ବିରୋଧୀଦଳ ନଥିଲେ ଶାସନ କ୍ଷମତାରେ ଥିବା ଦଳର ଅନ୍ୟାୟର ଅସେମ୍ବ୍ଲିରେ କେହି ପ୍ରତିବାଦ କରି ପାରିବେ ନାହିଁ । ତେଣୁ ସେମାନେ ଲଗାମ ଛଡ଼ା ହୋଇଯିବେ ଓ ଉଦ୍ଦେଶ୍ୟ ଖରାପ ନଥିଲେ ମଧ୍ୟ ଉତ୍ସାହର ମାତ୍ରା ବେଶି ହୋଇଯିବା ଫଳରେ ଅବାଟରେ ଚାଲିଯାଇ ପାରନ୍ତି ।

ବିନା ଲଗାମରେ ଘୋଡ଼ା ଚଢ଼ିବାରେ ଯେଉଁ ବିପଦ ଅଛି ବିରୋଧୀଦଳ ନ ଥାଇ ଗଣତନ୍ତ୍ର ଶାସନ ଚାଲିବାରେ ଠିକ୍ ସେହି ବିପଦ ଅଛି । ଘୋଡ଼ା ଯେତେ ସୁଧାର ହେଲେ ମଧ୍ୟ ସବାର ହାତରେ ଲଗାମ ରହିଥିବା ଦରକାର । ଯେଉଁ ମୁହୂର୍ତ୍ତରେ ଘୋଡ଼ା ଜାଣିଲା ଯେ ତା' ପାଟିରେ ଲଗାମ ନାହିଁ ସେହି ମୁହୂର୍ତ୍ତରୁ ସେ ଦୁଷ୍ଟ ହେବାକୁ ଆରମ୍ଭ କରିବ । ଲଗାମ ଟାଣିବା ହୁଏତ ଦରକାର ପଡ଼ି ନ ପାରେ—କିନ୍ତୁ ତା ବୋଲି ବିନା ଲଗାମରେ କେହି ଘୋଡ଼ା ଚଢ଼ି ନ ପାରେ । ଶାସନରେ ଥିବା ଦଳଙ୍କର ବିରୋଧୀ ଦଳ ହେଲା ଲଗାମ ।

ଆସେମ୍ବ୍ଲି ବା ପାର୍ଲାମେଣ୍ଟରେ ଜଣଙ୍କୁ ବିରୋଧୀ ଦଳର ନେତା ବୋଲି ସ୍ୱୀକାର କରାଯାଏ ଓ ଶାସନରେ ଥିବା ଦଳର ନେତା ବା ମୁଖ୍ୟମନ୍ତ୍ରୀ ଅନେକ ସମୟରେ ତାଙ୍କ ପରାମର୍ଶ ନେଉଥାନ୍ତି । ବିଲାତରେ ବିରୋଧୀ ଦଳର ନେତାଙ୍କୁ ଶାସକ ଦଳ ଖୁବ୍ ଖାତିର କରନ୍ତି ଓ ସରକାରଙ୍କ ତରଫରୁ ତାଙ୍କୁ ଗୋଟାଏ ଅଫିସ ଯୋଗାଇ ଦିଆଯାଏ । ସେ ବେତନ ମଧ୍ୟ ପାଆନ୍ତି । ଗଣତନ୍ତ୍ର ଶାସନର ଏ ହେଉଛି ଗୋଟିଏ ବଡ ବିଶେଷତ୍ୱ ।

## ପ୍ରତିନିଧି ଯିବେ
## ନା
## ତାଙ୍କୁ ପଠାଯିବ ?

ପ୍ରତିନିଧି ଯିବେ ନା ତାଙ୍କୁ ପଠାଯିବ—ଏହି ପ୍ରଶ୍ନର ଉତ୍ତର ଉପରେ ଅନେକ କଥା ନିର୍ଭର କରୁଛି । ଅସେମ୍ବ୍ଲି ମେମ୍ବର ହେବା ଗୋଟାଏ କିଛି ବଡ ଲାଭଜନକ ଚାକିରି ନୁହେଁ—ସେଠିକି ଲୋକର ସେବା କରିବା ପାଇଁହିଁ ଯିବାକୁ ହୁଏ । ତେଣୁ ଗୁଡ଼ାଏ ଟଙ୍କା ପଇସା ଖରଚ କରି ଯେଉଁ ପ୍ରାର୍ଥୀ ପ୍ରତିନିଧି ହେବାର ଉଦ୍ୟମ କରିବେ ତାଙ୍କୁ ଲୋକେ ନିଶ୍ଚୟ ପଚାରିବେ—ଏତେ ଟଙ୍କା ଖର୍ଚ୍ଚ କରି କାହିଁକି ଅସେମ୍ବ୍ଲିକୁ ଯିବାକୁ ମନ କରିଛ । ସେଠି ତ ଗୁଡାଏ ପଇସା ପାଇବାର ସମ୍ଭାବନା ନାହିଁ ।' ଯେତେବେଳେ ପ୍ରାର୍ଥୀମାନେ ଅସେମ୍ବ୍ଲିକୁ 'ଯିବେ' ନାହିଁ, ସେମାନଙ୍କୁ 'ପଠାଯିବ' ସେତେବେଳେ ଯାଇଁ ଗଣତନ୍ତ୍ର ଶାସନ ହେବ । ଲୋକେ ପ୍ରାର୍ଥୀ ଦୁଆରକୁ ଯାଇ ପ୍ରତିନିଧି ହେବା ପାଇଁ ଅନୁରୋଧ କରିବେ—ପ୍ରାର୍ଥୀ ଲୋକଙ୍କ ପାଖକୁ ଯାଇ ବିକଳ ହୋଇ ଭୋଟ ମାଗିବ ନାହିଁ—ଏହି ଅବସ୍ଥା ଯେତେବେଳେ ଆସିବ ସେତେବେଳେ ଯାଇ ଲୋକେ

ଗଣତନ୍ତ୍ରର ପ୍ରକୃତ ସ୍ୱାଦ ପାଇବେ । ଅଜସ୍ର ଧନ ଖର୍ଚ୍ଚ କରି ଯେଉଁ ଲୋକ ଆସେମ୍ବ୍ଲିକୁ ଯାଇଥିବ ସେ ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ ନିଜ ପଦର ସୁଯୋଗ ନେଇ ଟଙ୍କା କରିବାର ଉପାୟ ଯାଞ୍ଚୁଥିବ ବୋଲି ଲୋକେ ହୁଏତ ସନ୍ଦେହ କରିବେ ।

ଯେଉଁ ଲୋକ ଟଙ୍କା ଖର୍ଚ୍ଚ କରି ନିଜ "ବାହୁବଳରେ" ଏମ୍: ଏଲ୍: ଏ: ହେଲା ସେ ଆଉ ଲୋକଙ୍କ ମତକୁ କାହିଁକି ଖାତିର କରିବ ? ସେ ନିଜେ "ଯାଇଛି" ବା ତା' ଟଙ୍କା ତାକୁ ପଠାଇଲା । ଯାହାକୁ ଲୋକେ ଦରକାର ହେଲେ ହାତରୁ ଖର୍ଚ୍ଚ କରି ପ୍ରତିନିଧି ବାଛିବେ ତାକୁ ଜାଣି "ଲୋକେ ପଠାଇଲେ"— ସେ ନିଜ ବାହୁବଳରେ ଗଲା ନାହିଁ । ଯାହାକୁ ଲୋକେ ପଠାଇଲେ ସେ ସବୁ କଥାରେ ଲୋକଙ୍କ ପାଖରେ 'ଜବାବ ଦେହି' ରହିବ । ନିଜେ ଯାଇଥିବା ଓ ଲୋକଙ୍କ ଦ୍ୱାରା ପଠାଯାଇଥିବା— ଏହି ଦୁଇ ପ୍ରତିନିଧିଙ୍କ ମନୋଭାବରେ ଆକାଶ ପାତାଳ ପ୍ରଭେଦ ରହିବ ।

ଜଣେ ଗୃହୀ କହିଲା ଭଳି ଆମେ ଗୃହ ପାଇଁ ଗୃହକର ବା କେଉଁଠି ଜଣେ ରଖିବାକୁ ଗଲେ ତା' ଦୁଆର ମୁହଁକୁ ଦଶଥର ଦୌଡ଼ି ତାର ଯାତ୍ରା ଖର୍ଚ୍ଚ ଫୁଲ ଲୁଗା ଦେଇ ଆମ କାମ ପାଇଁ ରଖୁଛୁ । ଯଦି ଜଣେ ଆସି ମୋତେ ଓଳଟି ଦଶ ପଚାଶ ଟଙ୍କା ସଲାମି ଦେଇ, ମୋ ଘରେ ଚାକରି ରହିବାକୁ ଚାହିବ ମୋର ନିଶ୍ଚୟ ସନ୍ଦେହ ହେବ ଯେ ସେ ମୋ ଘରୁ ବା ବାକ୍ସରୁ ଯେ କୌଣସି ଉପାୟରେ ଚୋରି କରିବ । ଶ୍ରେଷ୍ଠ ହେଲାବେଳେ ମଧ୍ୟ ଶ୍ରେଷ୍ଠରମାନେ ଏହି କଥାଟା ଭାବି କାମ କରିବା ଉଚିତ ।

## ଶିକ୍ଷା—ଶୃଙ୍ଖଳା—ଗଣତନ୍ତ୍ର

ଆମେ ଏ କଥା ନିଶ୍ଚୟ ସ୍ୱୀକାର କରିବା ଯେ ଲୋକଙ୍କ ଭିତରେ ଶିକ୍ଷାର ପ୍ରସାର ନ ହେଲେ ସେମାନଙ୍କ ଭିତରେ ଶୃଙ୍ଖଳା ଜ୍ଞାନ ନ ଜନ୍ମିଲେ, ଆଇନକୁ ମାନି ଚାଲିବାର ପ୍ରବୃତ୍ତି ନ ରହିଲେ, କୌଣସି ଆଇନଟା ବଦଳାଇବା ପର୍ଯ୍ୟନ୍ତ ଧୈର୍ଯ୍ୟ ନ ଧରିଲେ ଗଣତନ୍ତ୍ର ଶାସନ ଚାଲି ପାରିବ ନାହିଁ । ବାତାଜୀର୍ଣ୍ଣ ରୋଗୀ ଭଲ ଓ ସୁସ୍ୱାଦୁ ଖାଦ୍ୟ ଖାଇ ହଜମ କରି ପାରେ ନାହିଁ—ତେଣୁ ସେ ଖାଦ୍ୟର ଉପକାର ପାଇ ପାରେ ନାହିଁ । ଶିକ୍ଷାର ପ୍ରସାର ନ ହୋଇ ଥିବା ଓ ଶୃଙ୍ଖଳାଜ୍ଞାନ ନ ଥିବା ସମାଜ ଗଣତନ୍ତ୍ର ଶାସନର ସୁଫଳ ଭୋଗ କରି ପାରିବ ନାହିଁ । ବରଂ ଏକଥା କୁହା ଯାଇ ପାରେ ଯେ ଆମ ଦୋଷ ଯୋଗୁଁ ଗଣତନ୍ତ୍ର ଶାସନ କ୍ରମେ ଏକଛତ୍ର-ବାଦର ରୂପ ନେଇ ନେବ ।

ଏବେ ଆମ ଦେଶରେ ପଂଚାୟତ ରାଜ୍ୟ ପ୍ରତିଷ୍ଠା ହେବାକୁ ଯାଉଛି । ଲୋକେ ଭୋଟ ଦେଇ ଗ୍ରାମପଂଚାୟତମାନ ବାଛିବେ ଓ ଅଞ୍ଚଳ ଶାସନ ଚାଲିବ । ଲୋକେ ଯଦି ବୁଝି ବିଚାରି ଯୋଗ୍ୟ ଲୋକ ନ ବାଛିବେ ସେମାନେ କଷ୍ଟ ଭୋଗ କରିବେ—ପରେ ଆପତ୍ତି କରିବାର କିଛି ନ ଥିବ ।

## ଜନମତ ଓ ସରକାର

ଥରେ ନିର୍ବାଚନ ହୋଇ ଗଲେ ସଂଖ୍ୟା ଗରିଷ୍ଠ ଦଳ ଶାସନ ଗାଦିରେ ବସିବେ । ସେମାନେ କିଛି ଭୁଲ୍ କଲେ ଜନମତ ସେମାନଙ୍କୁ ବାଟକୁ ଆଣିବ । ଆମ ଦେଶରେ ପ୍ରତିନିଧି ମାନଙ୍କୁ ଲୋକେ ବାଛିଲେ ମଝିରେ ଫେରାଇ ଆଣିବାର ଅଧିକାର ଲୋକଙ୍କୁ ଦିଆଯାଇନାହିଁ । ସେଥିପାଇଁ ସରକାର ଉପରେ ଜନମତର

ଗୁପ ପଡ଼ିବ ନାହିଁ ବୋଲି ବସ୍ତୁରବାର କୌଣସି କାରଣ ନାହିଁ । ଜନମତ ଯଦି ଶୃଙ୍ଖଳିତ ପନ୍ଥାରେ ପ୍ରକାଶ ପାଏ ଯେ କୌଣସି ନିର୍ବାଚିତ ସରକାର ଶୁଣିବାକୁ ବାଧ୍ୟ—ଶୁଣନ୍ତି ମଧ୍ୟ । ଶାସନ ଗାଦିରେ ଥିବା ଦଳ ଯଦି ଦେଖିଲେ ଯେ କୌଣସି ଗୋଟାଏ ବିଷୟରେ ସେମାନଙ୍କ ମଝରେ ଜନମତ ଆଦୌ ନାହିଁ ସେମାନେ ଇସ୍ତଫା ଦେଇ ଲୋକଙ୍କର ମତ ଜାଣିବା ପାଇଁ ପୁଣି ଥରେ ନିର୍ବାଚନରେ ଆସି ଠିଆ ହୁଅନ୍ତି ।

## ଗୋପନ ଭୋଟ

ବହୁ ଭାବିଚିନ୍ତି ସ୍ଥିର କରାଯାଇଛି ଯେ ଲୋକେ ଯେତେବେଳ ଆଇନ ସଭାକୁ ଭୋଟ ଦେବେ ସେତେବେଳେ କିଏ କାହା ପାଇଁ ଭୋଟ ଦେଲା ସେ କଥା ଅନ୍ୟଲୋକେ ଜାଣିବା ଉଚିତ ନୁହେଁ । ତାକୁହିଁ କୁହନ୍ତି 'ଗୋପନ ଭୋଟ' । ଗୋପନ ଭୋଟ ବା ସିକ୍ରେଟ ବାଲଟ୍ ପ୍ରଥା ନ ଥିଲେ ଅନେକ ଲୋକ ଭୋଟ ଦେବାକୁ ଡ଼ରନ୍ତେ । ପ୍ରତିପତ୍ତିଶାଳୀ, ଧନୀ ଓ ଦୁଷ୍ଟ ଲୋକଙ୍କ ବିରୁଦ୍ଧରେ ପ୍ରକାଶ୍ୟରେ ଭୋଟ ଦେବାକୁ ଲୋକେ ସାହାସ କରନ୍ତେ ନାହିଁ । ନିର୍ବାଚନ ନିଶା ଏଭଳି ଜୋରରେ ଧରେ ଯେ ଗୋପନ ଭୋଟ ପ୍ରଥା ନ ଥିଲେ ହାଣ କାଟ ହୋଇଯାଉ ଥାନ୍ତା ।

## ପ୍ରତ୍ୟକ୍ଷ ଓ ପରୋକ୍ଷ ଭୋଟ

ପ୍ରତିନିଧିମାନଙ୍କୁ ଦୁଇ ପ୍ରକାରରେ ନିର୍ବାଚନ କରାଯାଏ— ପ୍ରତ୍ୟକ୍ଷ ଭାବରେ ଓ ପରୋକ୍ଷ ଭାବରେ । 'ପ୍ରତ୍ୟକ୍ଷ ଭୋଟ' ଅର୍ଥ ଆମେ ସିଧା ସଳଖ ଭୋଟ ଦେଇ ପ୍ରତିନିଧି ବାଛି ଦେବା, ପରୋକ୍ଷ ଭୋଟ ଅର୍ଥ—ଆମେ କେତେଜଣ ପ୍ରତିନିଧି ବାଛି ଦେବା ଓ ସେହିମାନେ ଅନ୍ୟ କେତେଜଣଙ୍କୁ ବା ଜଣକୁ ବାଛିବେ ।

ଅସେମ୍ବ୍ଲି ବା ପାର୍ଲିମେଣ୍ଟକୁ ପ୍ରତିନିଧିମାନେ ସିଧା ସଳଖ ଭୋଟ ପାଇ ବଛା ହୁଅନ୍ତି । ପ୍ରତ୍ୟେକ ଭୋଟର ଭୋଟ ଦିଏ ଓ ଯେ ବେଶୀ ସଂଖ୍ୟାରେ ପାଇଲା ସେ ନିର୍ବାଚିତ ହୋଇଗଲା । କିନ୍ତୁ ଆମ ସଭାପତିଙ୍କୁ ବାଛୁଛି କିଏ ? ସମଗ୍ର ଭାରତରେ ଯେତେ ଅସେମ୍ବ୍ଲି ଓ ପାର୍ଲିମେଣ୍ଟ ସଭ୍ୟ ଅଛନ୍ତି ସେହିମାନେ ହେଲେ ସଭାପତି ନିର୍ବାଚନ ପାଇଁ 'ଭୋଟର' । ସେମାନଙ୍କ ସଂଖ୍ୟା ଚାରି ହଜାରରୁ ଟିକିଏ ବେଶି । ସେହିମାନେ ଭୋଟ ଦେଇ ଭାରତର ସଭାପତି ବା ରାଷ୍ଟ୍ରପତିଙ୍କୁ ବାଛୁଛନ୍ତି । ରାଷ୍ଟ୍ରପତି ଜଣେ ନିର୍ବାଚିତ ପ୍ରତିନିଧି ସତ—କିନ୍ତୁ ତାଙ୍କ ନିର୍ବାଚନଟା ପରୋକ୍ଷ ଭୋଟରେ ହୋଇଛି । ଆମଦ୍ୱାରା ନିର୍ବାଚିତ ପ୍ରତିନିଧିମାନେ ରାଷ୍ଟ୍ରପତିଙ୍କୁ ନିର୍ବାଚନ କରିଛନ୍ତି । ଆମେରିକାରେ ଭିନ୍ନ ବ୍ୟବସ୍ଥା, ସେ ଦେଶର ସଭାପତି ଲୋକମାନଙ୍କ ପ୍ରତ୍ୟକ୍ଷ ଭୋଟରେ ଯାନ୍ତି ।

ଆମ ଦେଶରେ ପାର୍ଲିମେଣ୍ଟକୁ 'ଲୋକ ସଭା' ବୋଲି କୁହନ୍ତି । 'ରାଜ୍ୟସଭା' ନାମରେ ଆଉ ଗୋଟିଏ ସଭା ଅଛି । ବିଭିନ୍ନ ରାଜ୍ୟ ଅସେମ୍ବ୍ଲିର ପ୍ରତିନିଧିମାନେ ଭୋଟ ଦେଇ କେତେଜଣଙ୍କୁ ବାଛୁଛନ୍ତି, ସେହିମାନେ ରାଜ୍ୟସଭାର ସଭ୍ୟ । ଏଇଟା ହେଲା 'ପରୋକ୍ଷ ନିର୍ବାଚନ' ।

ଆଉ ଗୋଟାଏ ପ୍ରକାରର ଜଟିଳ ଭୋଟ ପ୍ରଥା ଅଛି । ଧରନ୍ତୁ ରାଜ୍ୟସଭାକୁ ଆମ ଓଡ଼ିଶା ଅସେମ୍ବ୍ଲିରୁ ୧୪ ଜଣ ବଛା ହେବେ । ଶହେ ଚାଳିଶ ଜଣ ସଭ୍ୟ ଭୋଟ ଦେଇ ୧୪ ଜଣ ବାଛିବେ । ସେଠି ସିଧାସଳଖ ଭୋଟ ଗଣାଯାଏ ନାହିଁ ସିଧା ସଳଖ ଭୋଟ ଗଣତି ଅର୍ଥ—ସମସ୍ତେ ଭୋଟ ଦେଲା ପରେ କୋଉଏ ଜଣ ପ୍ରାର୍ଥୀଙ୍କ ଭିତରୁ ଯେଉଁ ଚଉଦ ଜଣଙ୍କର ବେଶି ଭୋଟ

ହୁଅନ୍ତା ସେହି ମାନେ ନିର୍ବାଚିତ ହୋଇ ଯାଆନ୍ତେ । କିନ୍ତୁ ତା' ହୁଏ ନାହିଁ । ସେଠି ପ୍ରତ୍ୟେକ ସଭ୍ୟ ବା ଭୋଟରେ ଚଉଦଟା ଭୋଟ ଦେଇ ପାରବେ—କିନ୍ତୁ ପ୍ରଥମ ଭୋଟଟିର ମୂଲ୍ୟ ଯଦି ଶହେ ହେଲା ଦ୍ୱିତୀୟ ଭୋଟଟିର ମୂଲ୍ୟ ତା'ଠାରୁ କମ୍ । ଅନ୍ୟ ଭୋଟଗୁଡ଼ିକର ମୂଲ୍ୟ ସେହି ଅନୁପାତରେ କମ୍ । ୧୪୦ଜଣ ୧୪ ଜଣଙ୍କୁ ବାଛିବେ । ଜଣେ ଯଦି ପ୍ରାୟ ଦଶଟା "ପହିଲି ଭୋଟ" ପାଇଗଲା ସେ ନିର୍ବାଚିତ ହୋଇଗଲା । କିନ୍ତୁ ଧରନ୍ତୁ କେତେଜଣ ବାର ଚଉଦଟା "ପହିଲି ଭୋଟ" ପାଇଗଲେ । ଅନ୍ୟମାନଙ୍କ ପାଇଁ ଦଶଟା ପହିଲି ଭୋଟ ତ ରହିଲା ନାହିଁ । ସେମାନଙ୍କ ଭିତରୁ କିଏ ଆଠଟା ପାଇଛି ଓ କିଏ ପାଇଛି ୬ଟା । ଏଥି ଯୋଗରେ ଗୋଳମାଳ ଜଟିଳ ହିସାବ । ସେମାନଙ୍କ ଭିତରୁ କେତେ ମୂଲ୍ୟର ଭୋଟ କିଏ ପାଇଛି ସ୍ଥିର କରିବା ପାଇଁ ଗୁଡାଏ କଲମ ଘୋରିବାକୁ ପଡେ । ଶେଷରେ ଦେଖିଲା ବେଳକୁ ୮ଟା "ପହିଲି ଭୋଟ" ପାଇଥିବା ଲୋକ ହୁଏତ କଟି ଗଲାଣି— ନିର୍ବାଚିତ ହୋଇଗଲାଣି ଗୁରଟା ପହିଲି ଭୋଟ ପାଇଥିବା ଲୋକ ।

## ନିର୍ବାଚନ ମଣ୍ଡଳୀ

ଗୋଟିଏ ଗୋଟିଏ ଅଂଚଳ ଜଣେ ଲେଖାଁ ପ୍ରତିନିଧି ପଠାଏ । ଆମ ଓଡିଶା ଆସେମ୍ବ୍ଲିକୁ ୧୪୦ ଜଣ ସଭ୍ୟ ଯାଆନ୍ତି । ସେମାନଙ୍କୁ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିର ସଭ୍ୟ ବା 'ମେମ୍ବର ଲେଜିସ୍‌ଲେଟିଭ ଆସେମ୍ବ୍ଲି ବୋଲି କୁହା ଯାଇଥାଏ । ଇଂରାଜୀରେ 'ମେମ୍ବର' ଶବ୍ଦରୁ ଏମ୍, 'ଲେଜିସ୍ ଲେଟିଭ୍'ରୁ 'ଏଲ୍' ଓ ଆସେମ୍ବ୍ଲିରୁ 'ଏ'—ନେଇ ଏମ୍: ଏଲ୍: ଏ: ବୋଲି କୁହାଯାଏ ! ସେହି ୧୪୦ ଜଣ ଏମ୍: ଏଲ୍: ଏ:ଙ୍କୁ ପଠାଇବା ପାଇଁ ସମଗ୍ର ଓଡ଼ିଶାକୁ ୧୪୦ଟା ଅଂଚଳରେ ଭାଗ କରାଯାଇଛି । ଗୋଟିଏ

ଗୋଟିଏ ଅଂଚଳନେଇ ଗୋଟିଏ ଗୋଟିଏ ଆସେମ୍ବ୍ଲି ନିର୍ବାଚନ ମଣ୍ଡଳୀ । ଇଂରାଜୀରେ କୁହନ୍ତି "କନ୍‌ଷ୍ଟିଚୁଏନ୍‌ସି" । ପାର୍ଲିମେଣ୍ଟପାଇଁ ଆମରାଜ୍ୟକୁ ୨୦ ଟା ଅଂଚଳରେ ଭାଗ କରାଯାଇଛି । ପ୍ରତ୍ୟେକଟି ଗୋଟିଏ ଲେଖାଁ ପାର୍ଲିମେଣ୍ଟ ନିର୍ବାଚନ ମଣ୍ଡଳୀ । ସାତଟା ଆସେମ୍ବ୍ଲି —ନିର୍ବାଚନ ମଣ୍ଡଳୀକୁ ନେଇ ଗୋଟିଏ ଲେଖାଁ ପାର୍ଲିମେଣ୍ଟ ନିର୍ବାଚନ ମଣ୍ଡଳୀ ଗଢ଼ାଯାଇଛି । ଓଡ଼ିଶାରେ ଏକଲକ୍ଷରୁ ଟିକିଏ ବେଶୀ ଲୋକ ଗୋଟିଏ ନିର୍ବାଚନ ମଣ୍ଡଳୀରେ ଅଛନ୍ତି ଓ ସେମାନେ ଜଣେ ଲେଖାଁ ପ୍ରତିନିଧି ପଠାନ୍ତି ।

ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ଛୋଟ ଛୋଟ ନିର୍ବାଚନମଣ୍ଡଳୀ ମଧ୍ୟ ସ୍ଥିର କରାଯାଇଛି । ଗ୍ରାମ ପଞ୍ଚାୟତମାନ ଗଢାଯିବ । ପାଞ୍ଚହଜାର ଲୋକ ଥିବା ଅଞ୍ଚଳକୁ ନେଇ ଯଦି ଗୋଟିଏ ଗ୍ରାମ ପଞ୍ଚାୟତ ହେବ ସେଥିରେ ପଚିଶ ଜଣ ସଭ୍ୟ ନିର୍ବାଚିତ ହୋଇ ଯିବେ । ତେଣୁ ପ୍ରତି ଦୁଇଶହଜଣ ଲୋକ ଜଣେ ଲେଖାଁ ସଭ୍ୟ ବାଛିବେ । ଦୁଇଶହ ଲୋକ ରହୁଥିବା ଗୋଟିଏ ଗୋଟିଏ ଅଂଚଳରେ ଗ୍ରାମପଞ୍ଚାୟତ ଏରିଆଟି ଭାଗ ହେବ । ଏ କ୍ଷେତ୍ରରେ ଛୋଟ ଛୋଟ ନିର୍ବାଚନ ମଣ୍ଡଳୀ ହୋଇଗଲା । ତେଣୁ ଦେଶଟାକୁ ପାର୍ଲିମେଣ୍ଟ, ଆସେମ୍ବ୍ଲି ଗ୍ରାମସଭା ଦୃଷ୍ଟିରୁ ଛୋଟବଡ଼ ନିର୍ବାଚନମଣ୍ଡଳୀ ବା କନ୍‌ଷ୍ଟି-ଚୁଏନ୍‌ସିରେ ଭାଗ କରାଯାଏ । କେବଳ ରାଷ୍ଟ୍ରପତି ନିର୍ବାଚନ ପାଇଁ ସମଗ୍ର ଦେଶକୁ ଗୋଟିଏ ନିର୍ବାଚନମଣ୍ଡଳୀ ବୋଲି ଧରା-ଯାଇଛି ।

## ଡବଲ ମେମ୍ବର ନିର୍ବାଚନ ମଣ୍ଡଳୀ

"ଡବଲ ମେମ୍ବର କନ୍‌ଷ୍ଟିଚୁଏନ୍‌ସି" ବୋଲି ଗୋଟାଏ କଥା ଆମେ ବରାବର ଶୁଣୁ । ଆମ ଦେଶରେ କୋଟି କୋଟି ଲୋକଙ୍କୁ ଅଛୁଆଁ କରି ରଖା ଯାଇଛି ଓ ଲକ୍ଷ ଲକ୍ଷ ଲୋକ ବଣ

ଜଙ୍ଗଲରେ ଅତି ଦୁଃଖ କଷ୍ଟରେ ଚଳନ୍ତି । ସେହି ହରିଜନ ଓ ଆଦିବାସୀମାନେ ନିର୍ବାଚନରେ ଅନ୍ୟମାନଙ୍କ ସହିତ ପ୍ରତିଯୋଗିତା କରି ପାରିବେ ନାହିଁ । ତେଣୁ ସେମାନଙ୍କ ପାଇଁ କେତେ ଗୁଡ଼ାଏ ଆସେମ୍ବ୍ଲି ସିଟ୍ ଅଲଗା କରି ଦିଆ ଯାଇଛି । ଗରିବ ପୁଅଙ୍କର ମା ଯାହା କରେ ଆମ ଦେଶର ଶାସନ ଖସଡ଼ାରେ ତାହାହିଁ ହୋଇଛି । ତିନି ପୁଅ ଯଦି ବଳୁଆ ଥାଆନ୍ତି ସେମାନେ ସବୁ ଭଲ ଜିନିଷ ଖାଇ ଦେବେ—ଦୁର୍ବଳ ପୁଅ ପାଇଁ ରଖିବେ ନାହିଁ । ଏହି ଭୟ ଥିବାରୁ ଦୁର୍ବଳ ପୁଅ ପାଇଁ ମା ଭଲ ଜିନିଷରୁ କିଛି କିଛି ଅଲଗା କରି ରଖି ଦିଏ । ହରିଜନ ଆଦିବାସୀଙ୍କ ପାଇଁ ଆସେମ୍ବ୍ଲି ସିଟ୍ ଅଲଗା ରଖା ଯାଇଥିଲେ ମଧ୍ୟ ସମସ୍ତଙ୍କ ଭୋଟ ବଳରେ ସେମାନେ ଯିବେ—କେବଳ ହରିଜନ ଭୋଟର ହରିଜନ ଏମ୍: ଏଲ୍: ଏ: ବାଛିବେ ନାହିଁ କି ଆଦିବାସୀ ଭୋଟର ଆଦିବାସୀ ଏମ୍: ଏଲ୍: ଏ: ବାଛିବେ ନାହିଁ । ଏହି ବ୍ୟବସ୍ଥା ହୋଇ ଥିବାରୁ ଡବଲ ମେମ୍ବର ନିର୍ବାଚନ ମଣ୍ଡଳୀ ଗଢ଼ା ଯାଇଛି । ବାଲିକୁଦା ନିର୍ବାଚନ ମଣ୍ଡଳୀରୁ ଜଣେ ସଭ୍ୟ ହେବେ । ସେଠା ଲୋକେ ଜଣେ ପ୍ରାର୍ଥୀଙ୍କୁହିଁ ଭୋଟ ଦେବେ । ଜଗତସିଂହପୁରରୁ ଜଣେ ଓ ଗୋବିନ୍ଦ ପୁରରୁ ଜଣେ, ଏହିଭଳି ଦୁଇଜଣ ଯାଆନ୍ତେ । କିନ୍ତୁ ସେହି ଦୁଇଟା ନିର୍ବାଚନ-ମଣ୍ଡଳୀକୁ ଏକାଠି ମିଶାଇ ଗୋଟିଏ ଡବଲ୍ ମେମ୍ବର ନିର୍ବାଚନ ମଣ୍ଡଳୀ କରି ଦିଆ ଯାଇଛି । ସେଠୁ ଯେଉଁ ଦୁଇଜଣ ଆସେମ୍ବ୍ଲିକୁ ଯିବେ ତାଙ୍କ ଭିତରୁ ଜଣେ ନିଶ୍ଚୟ ହରିଜନ ହୋଇଥିବା ଦରକାର । ସେଠି ପ୍ରତ୍ୟେକ ଭୋଟରଙ୍କୁ ଦୁଇଖଣ୍ଡ ଲେଖା ଭୋଟ କାଗଜ ମିଳିବ ।

ଶେଷରେ କଣ ହେବ ଦେଖାଯାଉ । ଧରି ନିଅନ୍ତୁ ହରି ମିଶ୍ର ରାମ ପଟ୍ଟନାୟକ, ଗୋପାଳ ମଲ୍ଲିକ ଓ ଅପର୍ତ୍ତି ଭୋଇ ପ୍ରାର୍ଥୀ

ହେଲେ । ହରି ମିଶ୍ର, ରାମ ପଟ୍ଟନାୟକ ସବର୍ଣ୍ଣ ହିନ୍ଦୁ—ଗୋପାଳ ମଲ୍ଲିକ, ଅପର୍ତ୍ତି ଭୋଇ ହରିଜନ । ହଜାରେ ଭୋଟରୁ ହରି ମିଶ୍ର ୪୦୦, ରାମ ପଟ୍ଟନାୟକ ୩୦୦, ଗୋପାଳ ମଲ୍ଲିକ ୨୦୦ ଓ ଅପର୍ତ୍ତି ଭୋଇ ୧୦୦ ପାଇଲେ । ଆସେମ୍ବ୍ଲିକୁ ଯିବେ ହରି ମିଶ୍ର ଓ ଗୋପାଳ ମଲ୍ଲିକ । ରାମ ପଟ୍ଟନାୟକ ଗୋପାଳ ମଲ୍ଲିକଠୁଁ ଅଧିକ ଭୋଟ ପାଇଥିଲେ ମଧ୍ୟ କଟି ଯିବେ—କାରଣ ଜଣେ ହରିଜନ ନିଶ୍ଚୟ ଯିବେ । ସବର୍ଣ୍ଣ ହିନ୍ଦୁରୁ ଜଣେ କଟିଗଲା—ବେଶି ଭୋଟ ପାଇ ମଧ୍ୟ ।

କିନ୍ତୁ ଆଉ ଗୋଟାଏ ମଜାର କଥା ହୋଇ ପାରେ । ଭୋଟ ଗଣିବାରେ ଦେଖା ଗଲା ଗୋପାଳ ମଲ୍ଲିକ ୪୦୦, ଅପର୍ତ୍ତି ଭୋଇ ୩୦୦, ହରିମିଶ୍ର ୨୦୦ ଓ ରାମ ପଟ୍ଟନାୟକ ୧୦୦ ପାଇଲେ । ଆସେମ୍ବ୍ଲିକୁ ପ୍ରାର୍ଥୀ ଯିବେ ଗୋପାଳ ମଲ୍ଲିକ ଓ ଅପର୍ତ୍ତି ଭୋଇ । କାରଣ ସେମାନେ ବେଶି ଭୋଟ ପାଇଲେ । ହରିଜନଙ୍କ ପାଇଁ ସିନା ସ୍ୱତନ୍ତ୍ର ସ୍ଥାନ ରଖା ଯାଇଛି—ସବର୍ଣ୍ଣ ହିନ୍ଦୁଙ୍କ ପାଇଁ ନାହିଁ । କାରଣ ସବର୍ଣ୍ଣ ହିନ୍ଦୁମାନେ ସଂଖ୍ୟା, ଶିକ୍ଷା ଦୀକ୍ଷା, ସବୁ-ଥିରେ ବଡ଼ ହୋଇ ଥିବାରୁ ତାଙ୍କ ପାଇଁ ସ୍ୱତନ୍ତ୍ର ସିଟ୍ ରିଜର୍ଭ କରି ରଖିବା ଦରକାର ବୋଲି ମନେ ହୋଇ ନାହିଁ । ଏହି ବ୍ୟବସ୍ଥା ସବୁଦିନ ପାଇଁ ରହିବ ନାହିଁ । କିଛିଦିନ ପରେ ଉଠାଇ ଦିଆଯିବ ବୋଲି ଶାସନ ଖସଡ଼ାରେ ଲେଖା ଅଛି । ସେତେବେଳକୁ ହରି-ଜନ ଓ ଆଦିବାସୀ ମାନଙ୍କର ଉନ୍ନତି ହୋଇ ସେମାନେ ଅନ୍ୟମାନଙ୍କ ସଙ୍ଗରେ କାନ୍ଧ ମିଳାଇ ଚାଲି ପାରିଥିବେ । ଆସେମ୍ବ୍ଲି ଭଳି ଡ଼ବଲ ମେମ୍ବର ପାର୍ଲିମେଣ୍ଟ ନିର୍ବାଚନମଣ୍ଡଳୀ ମଧ୍ୟ ଅଛି । ଦୁଇଦୁଇଟି ଆସେମ୍ବ୍ଲି ନିର୍ବାଚନ ମଣ୍ଡଳୀକୁ ନେଇ ଗୋଟିଏ ଡ଼ବଲ ମେମ୍ବର ପାର୍ଲିମେଣ୍ଟ ନିର୍ବାଚନ ମଣ୍ଡଳୀ ଗଢ଼ା ।

## ବହୁ ଦଳରେ ବିପଦ

ଦେଶରେ ଦୁଇ ତିନୋଟା ଦଳ ରହି ନିର୍ବାଚନ ଲଢ଼ିଲେ ଦେଶ ପକ୍ଷରେ ମଙ୍ଗଳ । ଗୁଡ଼ାଏ ଛୋଟ ଛୋଟ ଦଳ ହୋଇ ଗଲେ ଦେଶର ଶାସନ ଚଳାଇବା କଷ୍ଟ ହୋଇପାରେ । ସବୁ ଦଳରୁ କିଛି କିଛି ସଭ୍ୟ ନିର୍ବାଚିତ ହୋଇଗଲେ ମନ୍ତ୍ରୀମଣ୍ଡଳ ଗଢ଼ିବ କିଏ ? ଆମ ଓଡ଼ିଶାରେ ଯଦି ଆଠଟି ଦଳ ନିର୍ବାଚନ ଲଢ଼ିବେ ଓ ଭିନ୍ନ ଭିନ୍ନ ଦଳ ୨୩, ୧୪, ୧୫, ୧୨, ୧୧, ୧୦, ୮, ଓ ୭ ଲେଖାଁ ସିଟ ପାଇବେ କେଉଁ ଦଳ ମନ୍ତ୍ରୀମଣ୍ଡଳ ଗଢ଼ିବେ । ଶହେ ଛ'ଜଣ ଥିବା ଆସେମ୍ବ୍ଲିରେ ଗୋଟାଏ ଦଳ ଅଧାରୁ ବେଶି ବା ପ୍ରାୟ ଷାଠିଏ ନ ହେଲେ ମନ୍ତ୍ରୀମଣ୍ଡଳ ଗଢ଼ି ବେଶି ଦିନ ରହି ପାରିବେ ନାହିଁ । ତିନି ଚାରିଟା ଦଳ ମିଶି ଶାସନ ଡୋର ହାତକୁ ନେଇ ପାରନ୍ତି—କିନ୍ତୁ ସେଥିରୁ ଗୋଟିଏ ଛୋଟିଆ ଦଳ କେତେବେଳେ ବାହାରିଗଲେ ମନ୍ତ୍ରୀମଣ୍ଡଳ ଭୁଷୁଡ଼ି ପଡ଼ିବ । ଫ୍ରାନସ୍‌ରେ ଠିକ୍ ସେହି ଦଶା ହେଉଛି । ବହୁଦଳ ଠିଆ ହେଉ ଥିବାରୁ ମନ୍ତ୍ରୀମଣ୍ଡଳ ମାସ ବର୍ଷେ ସୁଦ୍ଧା ଟିକି ପାରୁ ନାହିଁ । ଇଂଲଣ୍ଡରେ ଟୋରି ଓ ଶ୍ରମିକ—କେବଳ ଦୁଇଟି ଦଳ ଅଛନ୍ତି । ଲିବରାଲ ବା ମଧ୍ୟଦଳ କ୍ରମେ ଲୁଚି ଗଲାଣି । ଆମେରିକାରେ ଦୁଇଟି ବଡ଼ ଦଳ ରହି ଅଛନ୍ତି । ତେଣୁ ସେ ଦୁଇ ଦେଶରେ ଗଣତନ୍ତ୍ର ନୀତି ଭଲ କାମ ଦେଖାଉଛି ।

## ସଂଖ୍ୟା ଗରିଷ୍ଠ ଶାସନ

ଗଣତନ୍ତ୍ର ଯୁଗରେ ସଂଖ୍ୟା ଗରିଷ୍ଠ ଦଳହିଁ ଶାସନ ଚଳାଇବେ । କିନ୍ତୁ ସଂଖ୍ୟା ଲଘିଷ୍ଠ ବା ମାଇନରିଟି ଦଳଙ୍କ ମତକୁ ବେଖାତିର କଲେ ଚଳିବ ନାହିଁ । ସେମାନେ ମଧ୍ୟ ଲକ୍ଷ ଲକ୍ଷ ଲୋକଙ୍କ

ପ୍ରତିନିଧି । ତେଣୁ ସଂଖ୍ୟାଗରିଷ୍ଠ ଦଳ ମାଇନରିଟୀ ବା ସଂଖ୍ୟା ଲଘିଷ୍ଠ ଦଳର ମତ ନିଅନ୍ତୁ । ସେମାନଙ୍କୁ ବୁଝାଇ ବୁଝାଇ ଯେତେଦୂର ସମ୍ଭବ ନିଜ ମତକୁ ଗ୍ରହଣ କରାଇବା ହେଲା ସଂଖ୍ୟା ଗରିଷ୍ଠ ଦଳର କାମ । ବିରୋଧୀଦଳ ସରକାରଙ୍କୁ ସମାଲୋଚନା ନିଶ୍ଚୟ କରିବେ । କିନ୍ତୁ ସେ ସମାଲୋଚନା ଗଠନ ମୂଳକ ହେବା ଉଚିତ । ତା ନ ହେଲେ ପରସ୍ପର ପ୍ରତି ତିକ୍ତତା ବଢିବ ଓ ବିରୋଧୀଦଳର ଯୁକ୍ତିକୁ ନ ଶୁଣିବା ପାଇଁ ସରକାରୀ ଦଳର ଜିଦ୍ ମଧ୍ୟ ବଢ଼ିବ । ଗଣତନ୍ତ୍ର ଶାସନର ମୂଳଭିତ୍ତି ହେଲା ପରସ୍ପର ପ୍ରତି ବିଶ୍ୱାସ ଓ ଜଣେ ଅନ୍ୟର କଥାକୁ ଅନେକ ଦୂର ପର୍ଯ୍ୟନ୍ତ ସହିବା ।

## ଗଣତନ୍ତ୍ରରୁ ବିଶ୍ୱାସ ତୁଟିଲେ ବିପଦ

ଗଣତନ୍ତ୍ର ଶାସନରୁ ଲୋକଙ୍କ ବିଶ୍ୱାସ ଦୁଇଟି କାରଣରୁ ତୁଟି ଯାଇ ପାରେ । ଶ୍ରେଷ୍ଠ ପାଇଁ ଯେଉଁମାନେ ଶାସନ ଚଳାଇଛନ୍ତି ସେମାନେ ଯଦି ନିଜର ଜବାବ ବା ପ୍ରତିଶ୍ରୁତି ନ ରଖନ୍ତି ଓ ଲୋକସ୍ୱାର୍ଥ ବିରୋଧୀ କାର୍ଯ୍ୟ କରନ୍ତି ଲୋକେ ଅସନ୍ତୁଷ୍ଟ ହୁଅନ୍ତି । ସେ ଅସନ୍ତୋଷ ଦେଖାଇବା ଫଳରେ ସେମାନଙ୍କ ଉପରେ ଯଦି ଅତ୍ୟାଚାର ହୁଏ ଲୋକଙ୍କର କ୍ରୋଧ ହୁଏ ଓ ସେମାନେ ନିରାଶ ହୋଇ ପଡନ୍ତି । ଏହି କ୍ରୋଧ ଓ ନିରାଶ ଲୋକଙ୍କ ମନକୁ ଗଣତନ୍ତ୍ର ଶାସନ ଆଡୁ ଫେରାଇ ନିଏ ଓ ସେମାନେ କ୍ରମେ ଏକଛତ୍ର ବାଦ ଆଡ଼କୁ ଅଗ୍ରସର ଯାନ୍ତି । ନିର୍ବାଚିତ ଦଳ ଯଦି କ୍ଷମତା ନିଶାରେ ଭୋଳ ହୋଇଗଲା ତେବେ ଗଣତନ୍ତ୍ରର ସମାଧି ପାଇଁ ଆୟୋଜନ ହୋଇଗଲା ।

ଅନ୍ୟକାରଣଟି ହେଲା ସରକାର ଅନ୍ୟାୟ କଲେ ତା' ବିରୁଦ୍ଧରେ ଜନମତ ସୃଷ୍ଟିନକରି, ଶାନ୍ତିପୂର୍ଣ୍ଣ ଉପାୟରେ ପ୍ରତିବାଦ

ନକଲ ଲୋକେ ଯଦି ହିଂସା ଆଚରଣ କରନ୍ତି ଓ ହିଂସାକୁ ଦମନ କରିବାକୁ ଯିବା ଫଳରେ ସମାଜରେ ଅଶାନ୍ତି ଘଟେ ସମସ୍ତେ ବିରକ୍ତ ହୋଇ ଉଠନ୍ତି ଓ ଭୁଲ ଚିନ୍ତାର କବଳରେ ପଡ଼ି ଲୋକେ ଏକଛତ୍ରବାଦକୁ ପସନ୍ଦ କରନ୍ତି ।

ଏହି ଦୁଇଟି ଭିତରୁ ଯେ କୌଣସି କାରଣରୁ ହେଉ ପଛକେ ଗଣତନ୍ତ୍ର ଶାସନ ଯଦି ବିଫଳ ହେଲା ତେବେ ଆମେ ସଭ୍ୟତା ନିଶ୍ଚୟ ନାଶ ହୋଇଯିବ । ତେଣୁ ନିର୍ବାଚିତ ପ୍ରତିନିଧି ଓ ଲୋକସାଧାରଣ—ଉଭୟେ ଦେଖିବା ଉଚିତ ଏ ଦେଶ ଯେପରି "ସମସ୍ତଙ୍କ—ଶାସନରୁ ଯାଇ" ଜଣେଲୋକର ବା ଅନ୍ୟକେତେ ଜଣଙ୍କ ଶାସନ" କବଳରେ ପଡ଼ି ନଯାଏ ।

---

ମୁଦ୍ରାକର—ଶ୍ରୀ ନିମାଇଁ ଚରଣ ଦାସ
ଦି ଓଡ଼ିଶା ପ୍ରିଣ୍ଟିଂ ଏଣ୍ଡ ପବ୍ଲିଶିଂ କୋ, ବାଲୁବଜାର, କଟକ—୨